# ପଥୁକି

ସିନ୍ଦୂରଗାର, ଅପରାହ୍ନ, ହୃଦୟର ବନ୍ଧନ, ପ୍ରେମର ଅମୃତ,
ପୋଡ଼ା କପାଳ, ପଞ୍ଜୁରୀ ପକ୍ଷୀ, ସ୍ୱପନ କୁହୁଡ଼ି,
ଭୂତ-ପଥର, ଭସାମେଘ, ସ୍ମୃତିର ମଶାଣି,
ଛଞ୍ଚିବତୀ (ଯନ୍ତ୍ରସ୍ଥ) ପ୍ରଭୃତିର
ଲେଖକ

**ରାଜକିଶୋର ପଟ୍ଟନାୟକ**

ପ୍ରକାଶକ
**ଶାନ୍ତି-ନିବାସ ବାଣୀ ମନ୍ଦିର**
ପ୍ରୋ:—ଶ୍ରୀମତୀ ବସନ୍ତକୁମାରୀ ପଟ୍ଟନାୟକ ଏମ୍. ଏ.
'ଶାନ୍ତି-ନିବାସ'
ପୁରୀଘାଟ ରୋଡ଼୍
କଟକ (୧)

ମୂଲ୍ୟ—ଏକଟଙ୍କା ଆଠଅଣା
( ଅତିରିକ୍ତ ନାହିଁ )

ପୂଜନୀୟ ଗୁରୁଦେବ

ରାୟବାହାଦୁର ଆର୍ତ୍ତବଲ୍ଲଭ ମହାନ୍ତି

କରକମଳେଷୁ

ଦୀର୍ଘ ଅଠର ବର୍ଷ ତଳେ ପ୍ରଥମ ପରିଚୟ । କଟକର ରେଭେନ୍‌ସା କଲେଜର ବିଜ୍ଞାନ ବିଭାଗର ଛାତ୍ର ହୋଇ ସପ୍ତାହରେ ଘଣ୍ଟାଟିଏ ହିସାବରେ ଓଡ଼ିଆ ପଢ଼ିବାର ସୁଯୋଗ ମିଳିଥିଲା । ସେତେବେଳର କୃତୀ ଛାତ୍ରମାନଙ୍କୁ ଆଜିର କର୍ମଠ ସାହିତ୍ୟସେବୀରୂପେ ଦେଖିବାକୁ ପାଉନାହିଁ ।

ସଂସାରର ଘୂର୍ଣ୍ଣି ପନ୍ଦର ବର୍ଷ ତଳେ ମୋ ଭଳି ଅକିଞ୍ଚନକୁ ସାହିତ୍ୟ-କ୍ଷେତ୍ରରେ ଫୋପାଡ଼ି ଦେଇଥିଲା । ଆଜି ସେମିତି ମୋର ସାହିତ୍ୟ-ବିରୋଧୀ ବୃତ୍ତିଟି ସେହି ସାହିତ୍ୟକ୍ଷେତ୍ରରୁ କେଉଁ ବାହାର କରି-ଦେବାକୁ କଠୋର ଅବସ୍ଥା କଲଣି ।

ସାହିତ୍ୟ-ସେବାରୁ ବିଦାୟ ନେବାକୁ ସଜବାଜ ହେଉଥିବା ଜଣେ ଅଯୋଗ୍ୟ ଛାତ୍ରର ଯଥାଯୋଗ୍ୟ 'ପଥିକ' ପୁସ୍ତିକାଟି ଭକ୍ତି-ନୈବେଦ୍ୟରୂପେ ନିବେଦନ କଲି ।

ରାଜକିଶୋର

'ଶାନ୍ତି ନିବାସ'
ପୁରୀଘାଟ ରୋଡ଼ . .
କଟକ-୨

# ସୂଚୀ

# ବାଟୋଇ

ଦୋଳପୂନେଇଁ ପାଖ ହେଇ ଆସୁଥାଏ । ବୋଉ ମୋର ବହୁତ ଟଣ ନିୟମ ପଟକଇ ଲେଖିଥିଲା ଆସିବା ପାଇଁ; କେତେ ଦିନରୁ ମତେ ଦେଖିନାହିଁ । ଆଶ୍ୱିନ ମାସରେ ଦଶହରାକୁ ମୁଁ ଆସିଥିଲି । ମଝିରେ ମୋଟେ ଗୃବେଟି ମାସ ଯାଇଛି, ତେବେ ବି ଦୋଳକୁ ନ ଆଇଲେ ତାହାର ଚଳିବ ନାହିଁ । ସେ ଲେଖିଥାଏ ଅନେକ ଦିନ ହେଲାଣି ମତେ ଦେଖିନାହିଁ—ମଲ୍ଲ ଭଲିଆ ଅଛି, ଭାତ ଭଲ କରି ଖାଉ ନାହିଁ, ଆଜି ବି କାଲି ମୁଁ ନ ଆସିବ ସେଥିପାଇଁ ତାଗଦା କରି ଲେଖିଥାଏ ଯେ ଗଙ୍ଗାପାଣି ଓ ଗଙ୍ଗାମାଟି ତାହାର ଶେଷ ହୋଇ ଯାଇଛି । ସେଥିରୁ କିଛି ଚଞ୍ଚଳ ଦରକାର ।

ଦୁନିଆର ସବୁ ବନ୍ଧନ ମୁଁ ଦୂରରେ ରଖିପାରିଛି—କାରଣ ବରଷ ବୟସରେ ସଂସାର ପାଇଁ ଯେତେପ୍ରକାରର ଟାଣ ଥାଏ ମୁଁ ସବୁ ଦୂରରେ ଠେଲି ଦେଇଛି । ଦୁନିଆର ସୁଖ ଶାନ୍ତିପାଇଁ କେବେ

ତୋର ମନ ଚଞ୍ଚଳ ହୋଇନାହିଁ । କିନ୍ତୁ ମୋର ଯେତେ ଦୁର୍ବଳତା, ସବୁ ଥିଲା ଏହି ବିଧବା ମା'ଟି ପାଇଁ । ବୋଉର ମଇଳା ମୁହଁ, ତାହାର ଲୁହଭରା ଆଖି ଦୁଇଟି ମୁଁ ମୋଟେ ସହିପାରେ ନାହିଁ । ଯେତେ ଯେଉଁଠି ଥାଏ, ଯେତେ ମୁଁ ମୋର ମନକୁ ଟାଣ କରି ବସିଥାଏ ନା କାହିଁକି, ସେତେବେଳେ ବୋଉର କାନ୍ଦଲା ମୁହଁ ମୋର ମନେ ପଡ଼ିଯାଏ । ସବୁ ଦମ୍ଭ ମୋର ଭାଙ୍ଗିଯାଏ । ତାହାର ଅନ୍ତ ପାଉ ମୋତେ ସେ ଜନ୍ମ ଦେଇଛି— ଏହି ଦେହରେ ଯେତେ ରକ୍ତ ବହୁଛି, ସେସବୁ ତାହାର କଲିଜାର ରକ୍ତ—ମୁଁ ମଣିଷ ହୋଇ ଯେ ଆଜି ଦୁନିଆର ମାଟି ଉପରେ ବୁଲୁଛି ତାହାର ମୂଳରେ ଅଛି ବୋଉର ତ୍ୟାଗ—ତାହାର ରକ୍ତ, ମାଂସ ଓ ହାଡ଼ । ତାହାପାଇଁ ମୁଁ ନ କରିବି ଏମିତ ଅଛି କ'ଣ ?

ସେ ଗୃହେଁ ମତେ ଦେଖିବା ପାଇଁ—ହେଲା ଏବେ ସେତକ ନିରର୍ଥକ । ତଥାପି ସେହି ନିରର୍ଥକ କଥାରେ ଯଦି ମୋର ବୋଉର ଶୁଖିଲା ମୁହଁ ଉଜ୍ଜ୍ୱଳ ଦିଶିବ, ମୋର ଅଭିବାଞ୍ଛା ଯଦି ତାକୁ ହସେଇ ପାରିବ ତାହାହେଲେ ସେଇଆ ଠିକ୍ । ଦୁଃଖରେ ତାହାର ବାଧା ଦେବି କଣ ପାଇଁ ?

ଦୋଳଛୁଟି ପାଖ ହୋଇ ଆସୁଥାଏ । ସେଥର ଦୋଳକୁ ମିଶେଇ କଣ ଚୋହାଏ ପଠାଣଙ୍କ ପର୍ବ ପଡ଼ୁଥାଏ ବୋଲି କଲେଜ ଅଠଦିନ ପାଇଁ ବନ୍ଦ ହେଉଥାଏ । ଛୁଟି ହେବାକୁ ତିନି ଦିନ ଥାଏ ଦାଦା ଚିଠି ଦେଇଥିଲେ, ଆଜି ବୋଉ ବି ଖଣ୍ଡେ ଚିଠି ଲେଖିଥିଲା । ବୋଉର ଚିଠିର ପ୍ରତି ଧାଡ଼ିରେ ତାହାର ମା ମନର ଯେତେ ସ୍ନେହ ଆଦର ସବୁ ଶେଷ କରି ଦେଇଥିଲା । ସେ ବେଶି ପାଠ ପଢ଼ି ନାହିଁ । ଅଛିକାଳର ପାଠୋଇ ହିଁଥିଙ୍କ ପର ସିଧା କଥାଟାକୁ ବୁଝେଇ କହିବା ତାହାର କ୍ଷମତାର ବାହାରେ । ସେ ଲେଖିଥାଏ—'ବାପ, ଭଲରେ

ଅଛୁ ଜାଣିଲେ ବଡ଼ ସୁଖ ପାଇବ । କାନ୍ଦ କାନ୍ଦ ଦାନ ସବୁ ନାହିଁ... ...ଆଜ ସବୁ ଭଲ...ମୋର ଦେହମୁଣ୍ଡ ଖବର କିଏ ଲେଖିବ ? ମୁଁ ଯେମିତି ମାଟି କାମୁଡ଼ି ପଡ଼ିଛି । ଅସିଲେ ଦେଖିପାରିବୁ—ନଷ୍ଟ ଅଛିବୁ ।' ଏମିତି ମାମୁଲି ଲେଖା । ଲେଖାରେ କିଛି ନୂଆ କଥା ନଥାଏ । ତଥାପି ତାହାର ପ୍ରତି ଧାଡ଼ିରେ ମା ମନର ଅସରନ୍ତି ସ୍ନେହ, ଅକଳନ ଶ୍ରଦ୍ଧା ଝରି ପଡୁଥାଏ ।

ଚିଠି ପଢ଼ିଲି—ଥରେ, ଦି ଥର, ତିନି ଥର । ଲେଖିଲାବେଳେ ବୋଉର ମନର ଅବସ୍ଥା କେମିତି ଥିବ, ଭାବିଲାବେଳକୁ ମତେ କାନ୍ଦ ଲାଗିଲା । ମା'ର ମନକୁ ମୋର କେତେ ବାଧୁଛି । ମୁଁ ଅସିଛି ପଢ଼ିବା ପାଇଁ—ପଢ଼ିଶୁଣି ଗୁଣିଆ ହେଲେ ମା'ର ଦୁଃଖ ଯିବ । ସେ ସେତକ ଭଲକରି ବୁଝିଛି । ତଥାପି ପେଟର ସେହି ତାଡ଼ନା ଭିତରେ ମଧ୍ୟ, ଅନାଟନର ସେହି ହା ହୁତାଶ ଭିତରେ ବି ମା ମୋର ମଣିଷ ହେଇ ବଞ୍ଚିରହିଛି । ମୁଁ ଦୂର ପାଟନା ସହରକୁ ଅସିଛି ସତ—ପାଠ ପଢ଼ିଲେ ଟଙ୍କା ଅଣିବି, ଏତକ ବି ସତ, ତଥାପି ମୋତେ ଦେଖିନପାଇ ମା' ମୋର ଝୁରୁଥିବ । ତାହାର ଖାଇଲା ଥାଳି ପାଖରେ ମୋର ମୁହଁ ତାହାକୁ ପ୍ରତିଦିନ ଦିଶୁଥିବ । ତାହାର ପୁଅ କେତେ ସୁନ୍ଦର—କେତେ ଗୁଣିଆ ! ମା'କୁ କେତେଥର ମନକୁ ବାଧିଲା ପରି ହାଣି ହାଣି କଥା କହିଛି— ସବୁ ମନେ ପଡ଼ିଲା । ଆଜି ଅଉ ମା ସବୁ ଭୁଲିଯାଇଛି—ଏଥିପାଇଁ ମନରେ ମୋର ବଡ଼ କଷ୍ଟ ଅସିଲା । ଏଡ଼େ କୁଳାଙ୍ଗାର ମୁଁ—ତେବେ ବି ମା ଅଖିରେ ମୋର ଦୋଷ କାହିଁ ? କେଉଁଠି ଦିଶିଲା ନାହିଁ ।

ପିଲାଟିଏ ହେଇଥିଲି, ବାପା ମରିଥିଲେ । ତାହା ପରେଠାରୁ ଦାଦାଙ୍କ ପାଖରେ ମଣିଷ ହେଉଛି । କିନ୍ତୁ ସେମାନେ ଅପଣାର ହେଲେ ବି ବାପା ନୁହନ୍ତି । ମୋର ମନ ଜାଣି କେହି ମୋର ଖବର ବୁଝିନାହିଁ । ସେହି ମା'ର କାନି ତଳେ ମୁଁ ସହିଛି ସବୁ । ସେହି ବଧବାର ପଣତ

ତଳେ ଏହି ଜୀବନର ମାନ ଅଭିମାନ, ଦୁଃଖ କଷ୍ଟ ସବୁ ମୁଁ ଏହି ଦେହରେ ବହନ କରୁଛି । ତାହାର ସାକ୍ଷୀ ଉପରେ ଭଗବାନ୍, ଆଉ ତଳେ ମୋର ବୋଉ !

ଦାଦା ଚିଠି ଦେଇଥାନ୍ତି । ମାମୁଲି ଆଦର କରି ଲେଖିଥାନ୍ତି । ଏମ୍. ଏ. ପରୀକ୍ଷା ଆଉ ଅଳ୍ପଦିନ ରହିଲା । ମୁଁ ଯେମିତି ବାହାରର କଥାରେ ମନ ନ ଦେଇ ଭଲକରି ପଢ଼ାପଢ଼ି କରିବି—ଏମିତି କେତେ କେତେ ଉପଦେଶ ଥାଏ—ଦେହର ଯତ୍ନ ନେବି, ନଇଲେ ପଢ଼ାରେ କ୍ଷତି । ଉପଦେଶ ଥାଏ, ମତେ ସେ ଯେତେ ଚିଠି ଲେଖିଥାନ୍ତି, ତାହାର ଶେଷ ଲକ୍ଷ୍ୟ ଥାଏ ଯେ ପଢ଼ାପଢ଼ିରେ ଯେମିତି କ୍ଷତି ନ ହୁଏ । ଚିଠିଟି ପଢ଼ିଲି ମନଦେଇ । ମୋର ମନ ବିଦ୍ରୋହ କରି ଉଠିଲା—ଏମାନେ ସମସ୍ତେ ସ୍ୱାର୍ଥପର । ଏମାନଙ୍କର ସ୍ନେହ ସୋହାଗ ଖାଲି ଲୋକ-ଦେଖାଣିଆ । ଛୁଟିକି ନ ଆସିଲେ ମା ପ୍ରତି ମୁଁ ଅନ୍ୟାୟ କରିବି । ଆସିଲେ ମୋର କ୍ଷତି କଣ ହେବ, ସେତକ ମା' ବୁଝୁନାହାନ୍ତି ସତ, ତଥାପି ସେ ଚାହେଁ ମତେ ଦେଖିବାପାଇଁ । ଆଉ ମତେ ପାଇଲେ, ଯଦି ସେ ସୁଖୀ ହୋଇପାରିବ ।—ମୁଁ ଆଉ ପାଟନାରେ ରହିବା ଅସହ୍ୟ ହୋଇ ଉଠିଲା । ସଂସାରର ହିସାବ ସବୁ ପଛରେ ପଡ଼ି ରହିଲା । ବିଛଣାପତ୍ର ସବୁ ଠିକ୍ କରି ମୁଁ କଟକକୁ ବାହାରିଲି । ଦୁଇଦିନ ପାଇଁ ହେଉ ପଛକେ, ମା' ପାଖରେ ରହି ଆସିବି ।

କେତେ ସୁଖ ଦୁଃଖର କଳ୍ପନା କରୁ କରୁ ପାଟନାରୁ ଟ୍ରେନ୍‌ରେ ଉଠିଲି ଗୋଟିଏ ଇଣ୍ଟର୍ କ୍ଲାସ୍‌ରେ । ଛୋଟିଆ ଡବାଟିଏ—ଦି ଜଣ ଅନ୍ତି, ବୁଢ଼ାବୁଢ଼ୀ ଦୁଇଟି । ଭିଡ଼ ନ ଦେଖି ମନରେ ଟିକିଏ ଶାନ୍ତି ଆସିଲା । ଅନ୍ତତଃ ସୁଖରେ ଯିବାର ଅବସ୍ଥା ହେଲା, ପରେ ଦେଖାଯିବ । ବିଛଣା ଢାଳି ପାରିଦେଇ ଶୋଇ ପଡ଼ିଲି—ସେତେବେଳେ ରାତି ନଅଟା ।

ସେତେବେଳେ ଆଉ ତାଙ୍କ ସାଥିରେ ଆଳାପ ପରିଚୟ କରିନାହିଁ । ସେହି ବୁଢ଼ା ଭଦ୍ରଲୋକଟି ଗୋଟିଏ ବହି ପଢ଼ୁଥାନ୍ତି ଓ ତାଙ୍କର ଅଗରେ ତାଙ୍କର ସ୍ତ୍ରୀ ଶୋଇ କଣ ଗପ କରୁଥାନ୍ତି—ମୁଁ ଶୋଇ ପଡ଼ିଲି ।

ଉଠିଲାବେଳକୁ ସକାଳ ହୋଇଯାଇଥାଏ । ନିଦ ଭାଙ୍ଗିଲା ଗୋଟିଏ କ'ଣ ଜଙ୍କ୍‌ସନ୍ ଷ୍ଟେସନ୍‌ରେ । ବୁଢ଼ାଟି ଆସି ମୋର ମୁଣ୍ଡ ପାଖରେ ବସି, ମୋର କପାଳରେ ହାତ ଥୋଇ କହୁଥାନ୍ତି, "ବାବୁ, ଉଠ—ଚା ଖାଇବ ।" ମତେ ଟିକିଏ ଆଚମ୍ବା ଲାଗିଲା—ଏମିତି ଅପରିଚିତ ଲୋକଙ୍କର ଅନ୍ତରଙ୍ଗତା ମୁଁ ସହିପାରିଲି ନାହିଁ ।

ମୋର ମୁହଁରେ ବିରକ୍ତି ଦେଖିପାରି ସେ ଟିକିଏ ଆହତ ହେଲା-ପରି ଜଣାଗଲେ । ସେ କହିଲେ, 'ବାପ, ଚା ଖାଇବ ନାହିଁ ? ସକାଳ ଏତେ ହେଲାଣି—କ'ଣ ଶୋଇଥିବ ?' ଦେଖିଲି, ଯେତେବେଳେ ଏତେ ଆଦର କରି ସେ ଉଠେଇଲେଣି, ତାଙ୍କ ସରଗଟା ଭାଙ୍ଗିବି କାହିଁକି ? କହିଲି, "ସକାଳୁ ଚା ? ମୁଁ ଦାନ୍ତ ଘଷିନାହିଁ । ଚା ଖାଇବି କେମିତି ?"

ଉଠିଯାଇ ସେ ଦାନ୍ତକାଠି ଖଣ୍ଡେ ଆଣିଦେଲେ । ଇଞ୍ଜିନ ଅଟକୁ ପାଣି ନେଉଥାନ୍ତି ଷ୍ଟେସନ୍‌ରେ । ମୋତେ ବଡ଼ ଅସୁବିଧାରେ ପଡ଼ିବାକୁ ହେଲା । ଖାଲି ସମୟ କଟିବ ବୋଲି ଦାନ୍ତଟି ଘଷି ହେଲି ; ଭାବୁଥାଏ ବହୁତଥର ଟ୍ରେନ୍‌ରେ ଯିବା ଆସିବା କରିଛି; କିନ୍ତୁ ଏମିତି ଅତ୍ୟାଚାର କେବେ ସହି ନାହିଁ, ବିନା ପରିଚୟରେ—

ସେ ବସିଥାନ୍ତି, କହିଲେ, "କଣ ଧନଯାକ ଦାନ୍ତ ଘଷିବ ?" ପଛକୁ ବୁଲି ଚାହିଁଲି—ସେ ହସୁଛନ୍ତି । ମୋର ମୁହଁ ଲାଜରେ ଲାଲ ପଡ଼ିଗଲା । ଚଞ୍ଚଳ ମୁହଁଟା ଧୋଇ ପକେଇ କହିଲି, "ଆଜ୍ଞା, କ୍ଷମା କରିବେ"—ମୁଣ୍ଡ କୁଣ୍ଡାଉଥାଏ ବାଁ ହାତରେ ।

ସେଇଠୁ ଆସି ବସିଲି । କ'ଣ କହି କଥା ଆରମ୍ଭ କରିବି ଭାବୁଛି, ସେ କହିଲେ, "କାଲି ରାତିରେ ଭାରି ଥଣ୍ଡା—ତମେ ତମର ମୁଣ୍ଡପାଖ ଝରକାଟି ଖୋଲା ରଖିଥିଲ—ଏତେ ଶୀତରେ ବି ତମର ନିଦ ଭାଙ୍ଗିଲା ନାହିଁ । ମୁଁ ବନ୍ଦ କରିଦେଲି ଶେଷରେ ।"

ସେତେବେଳକୁ ଦିନ ପହରେ ହେଲାଣି । ଦେଖିଲି ଯେ ଝରକା କାଚ ଫାଟିଛି । କହିଲି—"ମତେ ଉଠେଇଥିଲେ ମୁଁ ବନ୍ଦ କରି ଦେଇଥାନ୍ତି, ଆପଣ ବୃଥାରେ ଏତେ କଷ୍ଟ କଲେ ।" ପବନ ଆସିବ ବୋଲି ସେ ନିଜେ ସେତିକିବେଳେ କାଚଟାକୁ ଭଲକୁ ପକେଇ ଦେଲେ । ଏମିତି ଅଡୁଆ ଅପରାଧ ଏଇ ଦେବା ଦେଖି ମୋତେ ବିରକ୍ତ ଲାଗିଲା—ତେବେ ସେତେବେଳକୁ ସେ କାଚଟି ଖଟେଇ ସାରିଲେଣି । ତେଣୁ ଚୁପ୍ ହୋଇ ରହିବା ଛଡ଼ା ଆଉ ମୋ ହାତରେ କିଛି ନ ଥିଲା ।

ହାତ ଦେଖେଇ କହିଲି—"ଅହା, ମାଉସି, କାହିଁକି ଆପଣ ଏତେ କଷ୍ଟ କରୁଛନ୍ତି ? ତେବେ ଆପଣଙ୍କୁ ଏଇ କଷ୍ଟ ଦେଲି ବୋଲି ମତେ କ୍ଷମା ଦେବେ ।" ଏତିକି କହିଦେଇ ହସିଲି; ଭାରି ରହସ୍ୟ କଲି ବୋଲି ।

ସେ କିନ୍ତୁ ହସିଲେ ନାହିଁ—ମୁହଁଟି ଶୁଖେଇଦେଇ କହିଲେ—"ବାବୁ, ତମେ ପିଲାଲୋକ—ତମେ କ'ଣ ବୁଝିବ ? ତମର ମା ଏଇଠି ଥିଲେ, ସେ ବୁଝିଥାନ୍ତେ ।" ଶେଷ କେଇଟା ପଦ କହିଲା-ବେଳେ ତାଙ୍କର ସ୍ୱର ଥରିଲାପରି ମତେ ଜଣାଗଲା ।

ମା' କଥା ମନେ ପଡ଼ିବାରୁ ମୁଁ ସବୁ ଭୁଲିଗଲି । ସକାଳୁ ଉଠି ମା' ମୋର କଥା ହେଉଥିବ, ପୁଅ ଆସିବା କଥା ଅଛି—କାଳେ ବେ.ବେଲଲେ ତାକୁ ଗୃହଳ ଲାଗି ଦେଉଥିବ । ସତରେ ସେ ଯଦି ରାତିରେ ଥାନ୍ତା, ଗୋଟାଏ ଝରକା କ'ଣ, ସବୁ ଦୁଆର ଝରକା ଦେଇ

ଦେଉଥାନ୍ତି—ମୋର ଆଖି ଓଦା ହୋଇ ଆସିଲା । କାଳେ କିଏ ଦେଖିବ ବୋଲି, ବାହାରକୁ ଚାହିଁବାକୁ ଯାଉଛି, ସେ ଚା' କପ୍ ଆଣି କହୁଛନ୍ତି, 'ଚା ଖାଅ—'

ପଛକୁ ବୁଲି ଚାହିଁଲି । ତାଙ୍କର ମୁହଁ ଉପରେ ମୋର ଆଖି ପଡ଼ିଲା । ମା'ର ବୟସ ଠିକ୍ ଏତିକି ହେବ—ମା'ର ବି ଦୋଟିଏ ଗୋଟିଏ ବାଳ ଧଳା ହୋଇଛି । ସେ ଗୁଡ଼ାକ ଯେମିତି ସେ ରଖିଛି, ବୋହୂ ଆସିଲେ ବାଛିଦେବ ବୋଲି । ଖାଲି ତଫାତ୍ ଭିତରେ ଏତିକି ଯେ ମା'ର ମୁଣ୍ଡରେ ସିନ୍ଦୂର ନାହିଁ ।

ନାହିଁ ଭଳିଆ କଥା ହେଲି, କହିପାରିଲି ନାହିଁ । ହାତ ବଢ଼ାଇ ଚା' ନେଲି । ମୁଁ ଟିକିଏ ଟିକିଏ କରି ଚା' ଖାଉଥାଏ, ଆଉ ବେଳେ ବେଳେ ତାଙ୍କର ଆଡ଼େ ଚାହୁଁଥାଏ । ତାଙ୍କ ଆଡ଼େ ଚାହିଁଲା-ବେଳେ ସେ ମୁହଁ ତଳକୁ କରିଦେଉଥାନ୍ତି । ମତେ ଲାଗୁଥାଏ ଯେମିତି ତାଙ୍କ [illegible] କଷ୍ଟ ହେଉଛି । ବେଳେବେଳେ ପଚାରନ୍ତି, 'ବାବା, ତମେ କୁଆଡ଼େ ଯିବ ?'

ଚା ପିଉ ପିଉ କହିଲି—'କଟକ । ଆପଣମାନେ ?' ସେ ସେତେ-ବେଳେ ତଳକୁ ଚାହିଁଥିଲେ, ଆଉ ଆଖିରେ କଣ ପଡ଼ିଯାଇଛି ବୋଲି ଆଖି ପୋଛୁଥିଲେ । ସେମିତି ବାହାରକୁ ଚାହିଁ କହିଲେ, "ଆମେ ପୁରୀ ଯାଉଛୁ ତୀର୍ଥ କରିବା ପାଇଁ । ଆମ ଜୀବନର ସବୁ କାମ ସରି-ଯାଇଛି । ବାକି ରହିଛି କେବଳ ତୀର୍ଥ । ସେତକ ସରିଲେ, ଯେଉଁଠି ଦିନ ପୂରିବ, ଚାଲିଯିବୁ ।"

ତା ପରେ ଟିକିଏ ରହି ଆରମ୍ଭ କଲେ, "କାହିଁକି ପଚାରିଲ ବାପା ? ତମେ ଦହିଆନ ପିଲା—ତମର ପିଲାବୁଦ୍ଧି । କେଉଁଠା ଦିନରେ ଭୁଲିଯିବ । ଆମ୍ଭମାନଙ୍କୁ, ତମେ କେତେ [illegible] ଯାଇ ମତେ ଭୁଲିଯିବ ?" ତାଙ୍କର ମୁହଁ [illegible] ।

ମୋତେ ପ୍ରକୃତରେ ବଡ଼ ଲଜ୍ଜା ଲାଗିଲା । ବୁଢ଼ୀଟି ପାଖରେ ମୋତେ ହାଲଚାଲ ହେବାପାଇଁ ଉପାୟ ନ ଥାଏ । ଟ୍ରେନ୍‌ରେ ଚଢ଼ିଲାବେଳେ ଭାବିଥିଲି, ଏକୁଟିଆ ବେଳ କଟିବ । କିନ୍ତୁ ଦେଖିଲି ଯେ ଜଣେ ଅସି ମୋତେ ତାହାର ସ୍ନେହରେ କିଣିନେଲାଣି । ପିଲାଦିନରୁ ମୁଁ ସ୍ନେହ-କାଙ୍ଗାଳ । ତଥାପି ମୋର ମନଟା ଏପରି ଅଯାଚିତ ସ୍ନେହ ବିରୁଦ୍ଧରେ ଚିତ୍କାର କରି ଉଠୁଥାଏ ।

ସେ ପୁଣି ପଚାରିଲେ, "ବାବୁ, ସତେ କଣ ତମେ ଏହି ବୁଢ଼ୀକୁ ମନେ ରଖିବ ? ମୁଁ ପଚାରୁଛି ପରା, କହିଲ ନାହିଁ ।" ମୁଁ ଗୁହିଁଲି, ସେ ବଡ଼ ଆଗ୍ରହରେ ମୋର ଉତ୍ତରକୁ ଗୁହିଁ ରହିଛନ୍ତି । ମୁଁ କହିଲି, "ମାଉସି, ତମର ସ୍ନେହ କ'ଣ ମୁଁ କେବେ ଭୁଲିପାରିବି ? ଆଚ୍ଛା, ତମେ କହିଲ କେତେଦିନ ମତେ ମନେ ରଖି ପାରିବ ?"

ସେ କାନ୍ଦ ପକେଇଲେ । ଟୋପା ଟୋପା ହୋଇ ଲୁହ ତାଙ୍କର ଆଖିରୁ ଗଡ଼ିଆସିଲା । କହିଲେ, "ସତେ ବାପା, ଭୁଲିବ ନାହିଁ ? ସେଇଆ କରିବ । ମୋତେ ଭୁଲିଯିବ ବୋଲି ଜାଣିଲେ ମୋର ମନରେ ବଡ଼ କଷ୍ଟ ହୋଇଥାନ୍ତା । ତମକୁ ଦେଖିଲାବେଳୁ ତମପାଇଁ ମୋର ଭାରି ଶରଧା ହେଉଛି । ତମେ ଭୁଲିବ ନାହିଁ—ହରି ବନଦାଶରେ ଗୋଟାଏ ଚଳନ୍ତା ଟ୍ରେନ୍‌ରେ ଦେଖା—ମନେ ରଖିଥିବ ବାପା, ଏତିକି ମୋର ଆଶା—"

ସେ ଆଉ କହି ପାରିଲେ ନାହିଁ । ତାଙ୍କର ଆଖିରୁ ପାଣି ବହୁଥାଏ । ସେ ସେମିତି ମୁଣ୍ଡକୁ ପୋତି ବସିଥାନ୍ତି । ତାଙ୍କର ଏପରି ବ୍ୟସ୍ତ ହେବାର ଦେଖି, କ'ଣ କରିବି କିଛି ଠିକ୍ କରିପାରୁ ନ ଥାଏ । ଶେଷରେ କହିଲି, 'ଏପରି ବ୍ୟସ୍ତ ହେଲେ ମୁଁ ଚା' ଖାଇବି ନାହିଁ ।' ଏହା କହି ଖାଲି ଚା' କପ୍ ସହିତେ ପିଅଲାଟା ଥୋଇ ଦେଲି ।

ସେ ବହୁତ କଷ୍ଟରେ ସମ୍ଭାଳି ନେଇ କହିଲେ—'ବାପା, ମୋରପାଇଁ ତମେ କୁ ଖାଇଲ ନାହିଁ ? ମୋ ଧଣ, ଖାଅ ।' ଏହା କହି ତଳକୁ ହାତ ବଢ଼ାଉଥିଲେ, ତାକୁ ମତେ ଦେବେ ବୋଲି । ମୁଁ ହସି କହିଲି, 'ନାହିଁ ମାଉସି, ମୁଁ ପରା ଖାଇସରିଛି ।' ସେ ହସିଲେ । ତାଙ୍କର ନିହାତି ମୁହଁରେ ହସଟି ବଡ଼ ସୁନ୍ଦର ଦିଶୁଥାଏ ।

ଆଉ ତାଙ୍କର ମନରେ ଯେମିତି ସେ ପୁରୁଣା କଥା ମନେ ନ ପଡ଼େ, ସେଇଥିପାଇଁ କହିଲି, 'ମାଉସି, ଭାରି ଥଣ୍ଡା ପଡ଼ୁଛି । କୁ ଖାଇ ଭଲ ଲାଗିଲା—'

ସେତେବେଳକୁ ହେଇ ବୁଢ଼ାଟିର ନିଦ ଭାଙ୍ଗିଲାଣି । ସେ ସେଇଠୁ ଶୋଇ କହିଲେ, "କହେ, ଏତେ ସକାଳୁ ଯାଇ ଚିହ୍ନା ପରିଚୟ କରି ସାରିଲଣି ?" ମୁଁ କଣ କହିବି ବୋଲି ଭେଣିକି ମୁହଁ ବୁଲାଉଥିଲି; ବୁଢ଼ୀଟି ଉଠି ଠିଆହେଲେ, ଆଉ ମୋର କାନ୍ଧରେ ହାତ ଥୋଇ କହିଲେ, 'ବାବୁ, ମୁଁ କାନ୍ଦୁଥିଲି ବୋଲି ତାଙ୍କୁ କହିବ ନାହିଁ ।' ତାଙ୍କର ଆଖି ଦୁଇଟି ମିନତିରେ କରୁଣ ଦିଶୁଥାଏ । ମୁଁ ଖାଲି ମୁଣ୍ଡ ହଲାଇ କହିଲି 'ନା—'

ଏଣୁତେଣୁ ଭାବୁଥାଏ, ବୁଢ଼ୀଟି କଥା ମନେ ପଡ଼ୁଥାଏ, ଆଉ ତାହାରି ସାଙ୍ଗେ ସାଙ୍ଗେ ବି ମନେ ପଡ଼ୁଥାଏ ମୋର ବୋଉ କଥା । ସେହିଦିନ ରାତିରେ ଯାଇଁ ବୋଉ ପାଖରେ ପହଞ୍ଚିବି । କଲିକତାରୁ ବୋଉ ପାଇଁ କଣ ନେବି—କି ଠାକୁର—ଇଅ ଭାବୁଥାଏ । କଲିକତାର ଧୂଆଁ ସେତେବେଳକୁ ଦିଶିଲାଣି । ମୁଁ ଉଠି ବାକ୍ସ ଖୋଲି ଦର୍ପଣରେ ମୁଣ୍ଡଟାକୁ କୁଣ୍ଡାଇ ନେଲି, ଆଉ ଗୋଟିଏ ସିଗାରେଟ୍ ଲଗାଇ ବାହାରକୁ ଚାହିଁଲି । ମନେ ମନେ ଠିକ୍ କରିଥାଏ, ଏହି କଲିକତାରୁ ମୁଁ ଅଲଗା ହୋଇଯିବି—ଅଉ ଏମାନଙ୍କର ସ୍ନେହର ପରିଚୟ ଗ୍ରହଣ କରି ପାରିବି ନାହିଁ । ବୁଢ଼ୀଟିକୁ

ଠକଦେଇ ଗ୍ଭଲିଯିବ ଅଉ ପାଞ୍ଚ ଦଶମିନଟ୍ ପରେ । ସେ ସେତେ-ବେଳେ କଣ କହୁଥାନ୍ତି ଓ ମୋର ଅଡ଼େ ଗ୍ଭହୁଁଥାନ୍ତି । ଭାବଲି ବୋଧହୁଏ ସିଗାରେଟ୍‌ଟା ଖାଉଛି ବୋଲି ନଜର ପଡ଼ୁଛି—ତାହାର ଉପରେ ଅଲୋଚନା ଗ୍ଭଲିଥିବ । ତେବେ ସେଥିରେ ଯାଏଅସେ କଣ ? ମୁଁ ତ ଅଉ ଏମାନଙ୍କ ସାଟିଫିକେଟ୍ ଖୋଜୁ ନାହିଁ ।

ତଥାପି ମତେ କାହିଁକି ଖରାପ ଲାଗିଲା— ସିଗାରେଟ୍‌ଟା ନ ଖାଇଥିଲେ ଭଲ ହୋଇଥାନ୍ତା । ପର ! ମୁଁ ବାହାରକୁ ଟିକଏ ଗ୍ଭହିଁ, କ'ଣ ଭାବି, ସେଇଟି ଫିଙ୍ଗିଦେଲି, ଅଉ ଅସି ବଛଣା ବାନ୍ଧିବାରେ ଲାଗିଲି ।

ବୁଢ଼ୀଟି ସେତେବେଳେ ଅସି ପାଖରେ ଠିଅହୋଇ କ'ଣ ଯେମିତି କହିଲା କହିବା ଭଳିଆ ହେଉଥାନ୍ତି । ମୁଁ କିଛି ନ ଦେଖିଲା ପରି ବଛଣା ବାନ୍ଧୁଥାଏ । ସେତେବେଳକେ କହିଲେ, "ବାବୁ, ଏତେ ପିଲାଦିନୁ ତମେ ସିଗାରେଟ୍ ଖାଉଛ, ତମର ଦେହ ଖରାପ ହେବ ନାହିଁ ?" ମୁଁ ବୁଲି ଗ୍ଭହିଁଲି—ଦେଖିଲି ଯେ ବୁଢ଼ାଙ୍କର ମୁହଁରେ ବିରକ୍ତି । ସେ କହିଲେ, "ଓଃ, ତମକୁ ଅଉ ପାରହେବ ନାହିଁ । ଅସ ଏଠି ବସ—ତମକୁ ଖରାପ ଲାଗିବ ବୋଲି କଣ କେହି କିଛି କହିବେ ନାହିଁ ?"

ମୋ ମୁଣ୍ଡ ଛୁଉଁଚାଲା ପରି ଲାଗିଲା । ମୁଁ ଯାଇ ସେମାନଙ୍କ ପାଖରେ ବସିଲି । ସେତେବେଳକୁ ବୁଢ଼ୀଟି ଯାଇ ବସିଗଲେଣି । କହିଲି, "ମୁଁ ଅଭ୍ୟାସ କରି ଖାଏ ନାହିଁ । କେବେ କେମିତି ଖାଏ । ଏହି ପାଟନାରୁ ଅସିଲାବେଳେ ଗୋଟିଏ ପ୍ୟାକେଟ୍ କିଣିଥିଲି ।" ପକ୍‌ଟରୁ କାଢ଼ି ଦେଖାଇଲି । ତା ପରେ କହିଲି, "ଅଉ ଖାଇବି ନାହିଁ ।" ଏହା କହି ପକ୍‌ଟରୁ ଫୋପାଡ଼ିଦେଲି ।

ବୁଢ଼ୀଟି ମୋର ହାତ ଧରି ପକେଇଲେ । କହିଲେ, 'ବାପା, ତୋର କଥାରେ କଣ ଫିଙ୍ଗିଦେଲି ? ତେବେ ଏଇଟି ଖଗ୍ରପ— ଭଗବାନ ତମର ମଙ୍ଗଳ କରନ୍ତୁ । ତମେ ଦୀର୍ଘଜୀବୀ ହେଇଥାଅ ।'

ସେତେବେଳକୁ କଲିକତା ଷ୍ଟେସନ୍ ହୋଇଯାଇଥାଏ । ମୁଁ ସେମାନଙ୍କୁ କିଛି ନ କହି ଗାଡ଼ିରୁ ଓହ୍ଲେଇ ପଡ଼ିଲି । ବାହାରେ ଥାଇ କୁଲି ହାତରେ ଜିନିଷ ଛାଡ଼ିନେଲି । ମନକୁ ଦୃଢ଼ କରିଥାଏ, ଏହି କଲିକତାରୁ ମୁଁ ଅଲଗା ହେଇଯିବି—ଆଉ ଏମାନଙ୍କ ସାଥିରେ କେଉଁଠି ଯାଏ ବି ନୁହେଁ ।

ମୋର ବିଛଣା, ସୁଟ୍‌କେଶ୍ ନେଇ ଷ୍ଟେସନରେ ରଖି ପଦାକୁ ବାହାରୁଛି ଦେଖିଲାବେଳକୁ ଆଗରେ ବୁଢ଼ୀ ଛିଡ଼ା ହୋଇ ସତେ ଯେମିତି ମୋତେ ଖୋଜୁଛନ୍ତି ।

ମୁଁ ବାଟଭାଙ୍ଗି ଗୁଲିଯିବି ବୋଲି ବାହାରୁଛି, ସେ ଧରି ପକେଇଲେ । କହିଲେ, 'ସେମିତି ପଳେଇଲେ କଣ ମୁଁ ଛାଡ଼ିବି ?' ବିରକ୍ତ ହେଲିନାହିଁ—ହସି କହିଲି, 'ଆପଣମାନଙ୍କୁ ତ ମୁଁ ଖୋଜୁଛି କୁଆଡ଼େ ଗଲେ ବୋଲି ।' ସେ ହସି କହିଲେ, 'ସେ ଯାଇଛନ୍ତି ତମକୁ ଖୋଜିବା ପାଇଁ, ତମର ଆଉ ଆମକୁ ଖୋଜିବା ଦରକାର ନାହିଁ । ଜିନିଷ ପତର କେଉଁଠି ରଖିଲ ?'

"ଅଫିସରେ—" ବୋଲି କହିଲି । ସେ ଟିକିଏ ମନଦୁଃଖ ଦେଖାଇ କହିଲେ, "ଅକାରଣରେ ଏତେଗୁଡ଼ାଏ ପଇସା ଦବ, ଆମେ ଏଇଠି ରହିଥିଲୁ, ଆମ ପାଖରେ ରଖିଥିଲେ କଣ ଚୋରି କରିନେଇ ପଳାଇଥାନ୍ତୁ ?"

ମୁଁ ବଡ଼ ଲଜ୍ଜିତ ହେଲି । ତାଙ୍କ ହାତ ଧରିପକେଇ କହିଲି, 'ମାଉସୀ, ଏମିତି ଆଉ ଟାଣ କଥା କହିବ ନାହିଁ । ମୁଁ ଭାବିଲି,

କଲିକତାରେ ତୁମେ ଭଲେ ରହିବ । ମୋର ଧନ ବାରଟା ଗାଡ଼ିରେ ଫେରିବାର କଥା, ଟିକିଏ ବଜାରରେ କାମ ଥିଲା, ସେଇଥି ପାଇଁ ସିନା—'

ବୁଢ଼ାବାବୁଟି ଅସିଲେ । ମତେ ଦେଖି ବୁଢ଼ୀଙ୍କୁ ବଡ଼ ଆନନ୍ଦରେ କହୁଥିଲେ, 'ଏଥିଭିତରେ ତମେ ଏହାଙ୍କୁ ପାଇସାରିଲଣି ? କେଉଁଠି ପାଇଲ ?' ବୁଢ଼ୀ ବି ହସି କହିଲେ, 'ପଳାଇ ଯାଉଥିଲେ, ବାଟରେ ଧରିଲି ।'

ଶେଷରେ ଠିକଣା ହେଲା ମୁଁ ବାରଟା ଗାଡ଼ିରେ ଫେରିବି ଓ ସେମାନେ ମଧ୍ୟ ସେହି ଗାଡ଼ିରେ ଫେରିବେ । 'ଷ୍ଟେସନ୍‌ରେ ଦେଖା ହେବ' ବୋଲି କହି ମୁଁ ତରତର ହୋଇ ବାହାରି ପଡ଼ିଲି । ଟ୍ରାମ୍‌ରେ ଗଲାବେଳେ ଭାବୁଥାଏ, ଏମାନଙ୍କର ଏହି ସ୍ନେହର ଜଞ୍ଜାଳ ଏତେ ବେଶୀ ହେବ ବୋଲି ଜାଣିଥିଲେ ପାଟନାରେ ଅଉ ଗୋଟାଏ ଡବାରେ ଚଢ଼ିଥାନ୍ତି । କେଜାଣି ଅଉ କଣ ଭାଗ୍ୟରେ ଅଛି ?'

ଧନ ଏଗାରଟା ବେଳେ କଲିକତାରୁ ଫେରିଲି । ବୋଉପାଇଁ ଗୋଟିଏ ବିଶ୍ୱନାଥଙ୍କର ମନ୍ଦିର ଅଣିଥାଏ—ତାହା ଭିତରେ ଗୋଟିଏ ଠାକୁର ଥାନ୍ତି; ହାତୀଦାନ୍ତରେ ତିଆରି । ଅସିଲାବେଳେ ବାଟରେ ଖାଇଦେଇ ଅସିଥାଏ; କାଳେ ଷ୍ଟେସନ୍‌ରେ ବୁଢ଼ୀ ମୋତେ ପୁଣି ହଇରାଣ କରିବେ । ଅସି ଷ୍ଟେସନରେ ପହଞ୍ଚିଲା ବେଳକୁ ବୁଢ଼ୀଟି ଇଣ୍ଟରକ୍ଲାସ୍ ଓଏଟିଙ୍ଗ୍ ରୁମ୍‌ରେ ବସିଥାନ୍ତି ଯେମିତି କାହାକୁ ଅପେକ୍ଷା କରି । ମତେ ଦେଖି କହିଲେ, "ଉଃ, କେତେ ଡେରି, ମୁଁ ଗୁହିଁ ଗୁହିଁ ଅଖିରୁ ପାଣି ମଲାଣି— ।"

ମୋତେ ହସ ଲାଗିଲା—ଅଚ୍ଛା କଥା, ମୁଁ କଲିକତାରେ କଣ ଅଉ କିଛି କଣିବ ନାହିଁ । ଖାଲି ସ୍ୱାଙ୍କର ମୁହଁକୁ ଗୁହିଁ ବସିଥିବି ?

ମତେ ହସିବା ଦେଖି, ତାଙ୍କର ମନରେ ସନ୍ଦେହ ହେଲା । ପଚାରିଲେ: "ବାବୁ, କାହିଁକି ହସିଲ ?" ମୁଁ ଏଣିକି ତେଣିକି ଚାହିଁ କହିଲି, "ଡେରି ହେଲେ ତମେ ବ୍ୟସ୍ତ ହେବ ବୋଲି ଧରି ମୁଁ ଡେରି କରି ଅସୁଛି; ଆଉ ହସିବି ନାହିଁ ?" ଏତିକି ଶୁଣି ବୁଢ଼ୀଙ୍କର ଓଠରେ ହସ ଖେଳିଗଲା; କହିଲେ, "ଯାହାହେଉ ତମର ଏତେ ସ୍ନେହ ଅଛି ବୋଲି ମୋର ଧାରଣା ନ ଥିଲା, ଏଇଟି କାହିଁକି କିଣି ଆଣିଲ ?"

ତାଙ୍କର ସେତିକି କଥା ଶୁଣି ମୋର ମନ କଣ ହୋଇଗଲା । ଏଇଟା ଯେ ମୁଁ ମୋର ବିଧବା ବୋଉ ପାଇଁ ଆଣିଛି । ସେ ଯଦି ହେଉ ବିଶ୍ୱନାଥ ମୂର୍ତ୍ତି ଓ ଦେଉଳଟି ନିଅନ୍ତି ତାହାହେଲେ—ମୁଁ ଆଉ ଭାବି ପାରିଲି ନାହିଁ । ସେ କହିଲେ, "ତମର ଏହି ଗୁଣଟି ପାଇଁ ମୋତେ ଡର ହେଉଥିଲା, ମୁଁ ଜାଣିଥିଲି, ତମର କଲିକତାରେ ଆଉ କିଛି କାମ ନାହିଁ—ଖାଲି ମୋପାଇଁ କଣ ଆଣିବା ଛଡ଼ା ।" ମୁଁ ଦେଖିଲି ଆଉ ପାରି ହବ ନାହିଁ । ମୋର ମନର ସବୁ ଫୂର୍ତ୍ତି ଲିଭିଗଲା । ଭଦ୍ରତା ଖାତିରରେ ଶୁଖିଲା ହସ ହସି କହିଲି, "କ'ଣ ମାଉସି, ତମକୁ ଏଇଟା ଖରାପ ଲାଗିଲା ? ତାହାହେଲେ ମୁଁ ରଖିଦେ, ତମର ଦୁଃଖ କାହିଁକି ?"

ମୋର ମୁଣ୍ଡରେ ହାତ ବୁଲେଇ ସେ କହିଲେ, "ନାହିଁ ବାପା, ତମେ ଯାହା ଆଣିବ ସେଥିରେ ମୋର ଆନନ୍ଦ । ତମର ସରାଗରେ ମୁଁ ବାଧା ଦେବି ନାହିଁ । ଏତେ ବାଟ କଷ୍ଟକରି କଲିକତାରୁ ଯେତେବେଳେ ମୋ ପାଇଁ ଆଣିଛ, ମୁଁ ଫେରେଇ ଦେବି ? ଏଡ଼େ ଚଣ୍ଡାଳୁଣୀ ମୁଁ ନୁହେଁ ।" ଏହା କହି ମୋ ହାତରୁ ସେଇଟି ସେ ନେଲେ । ମୁଁ ସେମିତି ଠିଆ ହୋଇଥାଏ । ବୋଉ ପାଇଁ ଏଇଟି ବାଛି ବାଛି କିଣି ଆଣିଥିଲି । ସେ କେତେ ଖୁସି ହୋଇଥାନ୍ତା—କିନ୍ତୁ ତୁଣ୍ଡ ଖୋଲି କିଛି କହି ପାରିଲି ନାହିଁ । ଖାଲି ହସିଲି । "ମାଉସି,

ମୋର ବଡ଼ ଭାଗ୍ୟର ଧନ ଅଛି ତମେ ସେଇଟି ନେଇ ଚୋଲ୍ ।”
ସେ ସେଇଟି ନେଇ ସେତେବେଳେ ବାକ୍ସ ଭିତରେ ରଖୁଥିଲେ
କହିଲେ, “ଭଦ୍ରତାରେ କ ସଡ଼ିଯାଇଛ—ଅଉ କେତେ କହିବ ?”

ମୋର ଆନନ୍ଦ ସବୁଗ ସବୁ ସେଇ ପେଣ୍ଡ ଭିତରେ ରହିଗଲା ।
ମା ପାଇଁ ଯାହାକୁ ଆଣିଥିଲି ସେଇଟାକୁ ଏମିତି କୁଅଡ଼ର ଅଜଣା
ଅଚିହ୍ନା ଗୋଟିକ ହାତରେ ଦେଇ ମୋର ମନର ସବୁ ଶାନ୍ତି
ହଜିଗଲା । ସେତେବେଳେ ମୁଁ ମନରେ ନାନାପ୍ରକାର ଭାବନା
ସାଙ୍ଗରେ ଖେଳୁଥାଏ, ଅଉ ଏଣେ ଅମର ଏଇ ବୁଢ଼ୀଟି ଛିଡ଼ାହୋଇ
ମୋର ହାତଟାକୁ ଟାଣୁଥାନ୍ତି, “ଆସ, ଖାଇବାକୁ ଯିବା ।”

ମୋତେ ସେତେବେଳେ ବଡ଼ ବିରକ୍ତ ଲାଗୁଥାଏ । ଅଭଦ୍ର
ପରି ହାତଟାକୁ ଟାଣିନେଲି । ଦେଖିଲି, ବୁଢ଼ୀଙ୍କର ମୁହଁ ତଳା
ପଡ଼ିଗଲା । ସେ ଛିଡ଼ାହୋଇ ମୋ’ ଆଡ଼କୁ ଚାହିଁ ରହିଲେ । ମୁଁ
ମୋର ଭୁଲ୍ ବୁଝିପାରି କହିଲି, “ମାଉସି, ମୁଁ ପରା ବର୍ତ୍ତମାନ
କଲିକତାରେ ଜଣେ ବନ୍ଧୁଙ୍କ ଘରେ ଖାଇଆସିଛି—ଘଣ୍ଟାକେ ଅଉ
କେତେଥର ଖାଇବି ?” ଏହା କହି ହସିଲି । ସେ ସେଥିକରେ ଅଉ
ଓଜର ଆପତ୍ତି କଲେ ନାହିଁ । ମୁଁ ଦେଖିଲି ଯେ ତାଙ୍କ ମନରେ ଟିକିଏ
[illegible]ଟକା ରହିଗଲା । ମୁଁ ଅଉ ସେଥିକ ଅସନ୍ତୋଷ ଦୂର କରିବା ପାଇଁ
ଚେଷ୍ଟା ବି କଲିନାହିଁ । ମୋର ନିଜକଥାରେ ସେତେବେଳେ
ମୋର ଅଉ ବେଳ ନ ଥାଏ ।

ସେଇ ବୁଢ଼ୀଟି ଆସି ଖାଇବାକୁ ମତେ ଡାକିଲେ । ମୁଁ ତାଙ୍କୁ
କହିଲି ଯେ ଖାଇଦେଇ ସାରିଛି । ଓଜର ଆପତ୍ତି ନ କରି ସେ ନିଜେ
ଖାଇଲେ । କିନ୍ତୁ ବୁଢ଼ୀଟି ଖାଇଲେ ନାହିଁ । ମୁଁ ଜାଣିଲି, ମୁଁ ନ
ଖାଇଥିବାରୁ ସେ ଖାଇନାହାନ୍ତି । ମନରେ ବଡ଼ କଷ୍ଟ ହେଲା, ପୁଣି

ବିରକ୍ତ ଲାଗିଲା ଏହି ଅଭିନୟ ପାଇଁ । ମୁଁ ଟ୍ରେନ୍‌ରେ କଟକ ଫେରିବା କଥା—ଏଠି ବନ୍ଧୁ ଚର୍ଚ୍ଚା କରିବା ମୋର କାମ ନୁହେଁ । ତଥାପି କହିଲି, ଅନୁରୋଧ କଲି ହାତଗୋଡ଼ଧରି; ତେବେ ବି ସେ ଖାଇଲେ ନାହିଁ । କହିଲେ, ତାଙ୍କର ଭୋକ ନାହିଁ, ପରେ ଖାଇବେ ।

ଟ୍ରେନ୍‌ବେଳ ହେଲା, ଆମେ ଚାଲିଲୁ । ଆମ କାମରାଟିରେ ଜଣେ ଦୁଇଜଣ ଯାତ୍ରୀ ଥାଆନ୍ତି । ବଡ଼ କାମରାଟି ପ୍ରାୟ ଖାଲି ପଡ଼ିଥାଏ । ମୋର ଆଉ ପରିଚୟ ବଢ଼ାଇବାପାଇଁ ଇଚ୍ଛା ନ ଥାଏ । ମୁଁ ଏକୁଟିଆ ହୋଇ ବସିଲି । ସେହି ବୁଢ଼ାଟି ଖବର କାଗଜ ପଢ଼ୁଥାନ୍ତି, ଆଉ ମୁଁ ସେମିତି ବାହାରକୁ ଚାହିଁଥାଏ, ବୁଢ଼ୀ ବି ଗମ୍ଭୀର ।

ପ୍ରାୟ ଅଧଘଣ୍ଟା ପରେ ମୋର ମନଟା ବଦଳିଲା । ଭୁଲରେ ହେଉ ବା ମଦରେ ହେଉ, ମୋର ତାଙ୍କ ସାଙ୍ଗରେ ଶଦ୍ଧାହୋଇ କେତେକଥା ହୋଇଗଲାଣି; ସବୁ ମୋର ମନେ ପଡ଼ିଲା । ଭାବିଲି, ଜୀବନର ଗୋଟିଏ ଛୋଟିଆ ଘଟଣା ପରି ବହୁତଦିନ ମୋର ମନରେ ରହିଯିବ । ଉଠିଯାଇ ତାଙ୍କ ପାଖରେ ବସି କହିଲି, "ମାଉସି, କଟକ ତ ପାଖ ହୋଇଆସିଲା—ଆଉ କ'ଣ କଥା କହିବ ନାହିଁ ?"

ସେ ଚମକିପଡ଼ିଲା ପରି ହେଲେ । "ସତେ ବାପ, କଟକ କଣ ଏତେ ପାଖରେ ?" ତାଙ୍କର ଦୁଇଆଖି ଲୁହରେ ଭରିଗଲା । ସେ ପୁଣି ମୋର ଅଙ୍ଗୁଠିଗୁଡ଼ିକ ଧରି ଚିପୁ ଚିପୁ କହିଲେ "ବାବୁ, କଟକ ହେଉ ପାଟନା ହେଉ ବା ଏହି ନଅଁଲଗା ପୃଥିବୀର ଯେଉଁଠି ଥିବ, ଟିକିଏ ମନେ କରୁଥିବ—ଏତିକି ଜାଣିଲେ ମୋର ଅଶେଷ ଶାନ୍ତି । ଆଉ ବାପ, ଶୁଣ, ବୁଢ଼ାବୁଢ଼ୀଙ୍କର ତୁଣ୍ଡର ବଚନ, ମନର ଆନନ୍ଦ ହୁଏ କଲ୍ୟାଣ—ତମେ ଦୀର୍ଘଜୀବୀ ହୁଅ—ଭଗବାନ୍ ତମର ମଙ୍ଗଳ କରନ୍ତୁ ।"

ମୋର ଠାକୁର ବିଶ୍ୱାସ ନ ଥାଏ । କଥା ଭାଙ୍ଗି ପଚାରିଲି, "ମାଉସି, ସତେ କଣ ଠାକୁର ଅଚ୍ଛୁ ?" ତାଙ୍କର ମୁହଁ ଉଜ୍ଜ୍ୱଳ ଦିଶିଲା—ସେ କହିଲେ, "ହଁ ବାପା, ଠାକୁର ଅଛନ୍ତି । ମୋର ବିଶ୍ୱାସ ହୁଏ ଅଛନ୍ତି । ଆଜି ପିଲା ତମେ—ଯେତେବେଳେ ଆମର ପରି ତମର ଦେହ ଥକିବ, ବଳ କମିବ, ସେତେବେଳେ କହିବ, ଠାକୁର ଅଛନ୍ତି ।"

ଏମିତି କେତେଅଙ୍କ କେତେ କଥା ପଡ଼ିଲା । ସେ ବାବୁଟି ଖବରକାଗଜ ରଖିଦେଇ ଆସି ଆମ ସଙ୍ଗରେ ମିଶିଥାନ୍ତି । ସେଥିରେ ସେମାନେ ମୋର ନାଁ, ବୟସ, ଘର, ଜାତିପତି ସବୁ ବୁଝିନେଇ ସାରିଥାନ୍ତି । ପ୍ରତି କଥାରେ ସେମାନଙ୍କର ଆଗ୍ରହ ପୂରି ରହୁଥାଏ । ଗୁରଣ୍ଟାବେଳ, ଖଡ଼ଗପୁର ପାଖହୋଇ ଆସିଥାଏ । ସେ ବାବୁଟି ଖାଇବାକୁ ମାଗିଲେ ।

ଦେଖିଲି ଯେ ପୁଣି ଥରେ ସେହି କଥା—ମୁଁ ପରସ୍ତା କରିବା ପାଇଁ ଯାଇ କେତେବେଳଯାଏ ରହିଲି । ଆସିଲାବେଳେ ଦେଖିଲି ତିନୋଟି ପ୍ଲେଟ୍‌ରେ ଜଳଖିଆ । ବାବୁଟି ଗୋଟିଏ ପ୍ଲେଟ୍ ନେଇ ଖାଇବା ଆରମ୍ଭ କରିଦେଲେଣି । ମୋ ପାଇଁ ଗୋଟିଏ ଓ ବୁଢ଼ୀ ନିଜ ପାଇଁ ଗୋଟିଏ ଥୋଇ ହାତ ଟେକି ବସିଥାନ୍ତି । ମୁଁ ଆସି ଏହି ଅବସ୍ଥା ଦେଖି ମନା କଲି ଯେ ଖାଇବି ନାହିଁ । ବୁଢ଼ୀ ସେଇଠୁ ଉଠିଆସି ମୋ ପାଖିରେ ଗୋଟିଏ କ୍ଷୀରମୋହନ ଦେଲେ, ଆଉ ଲୁଗା ଖଂପ ହେବା ଭୟରେ ମୁଁ ବିନା ଆପତ୍ତିରେ ଖାଇଲି ।

ବୁଢ଼ୀଙ୍କର ଏହି ଆଦର ଓ ଆଗ୍ରହ ମୋତେ ପ୍ରକୃତରେ ବାନ୍ଧିଲା । ତାଙ୍କର କାମରେ କୌଣସି ବାଧା ଦେବାପାଇଁ ମୋର ଆଉ ଇଚ୍ଛା ନଥିଲା । ମୁଁ ଖାଇଲି, ମୁହଁ ହାତ ଧୋଇ ବସିଲି । ସନ୍ଧ୍ୟାବେଳ

ହୋଇ ଆସୁଥାଏ । ମୁଁ ପଦାକୁ ଚାହିଁ ଗୃହଅନ୍ତର ଅନ୍ଧାରକୁ ଦେଖୁଥାଏ । ମୋର ମନ ସେତେବେଳେ ବୋଉର ରୂପରେ ଭରି ଯାଇଥାଏ । ମୋର ବୋଉର ସ୍ନେହ ଆଦର ସବୁ ମନେ ପଡୁଥାଏ ।

କଟକ ଆଉ ଦୁଇଘଣ୍ଟାର ବାଟ । ଯେତେ ପାଖ ହୋଇ ଆସିଲା, ବୁଢ଼ୀଟିର ଅଧ୍ୟାତ୍ମର ସେତକ ବଢ଼ିଲା । ମୁଁ ପଦାକୁ ଚାହିଁଲେ ସେ ଅସି ମୋତେ ପଛରୁ ଡାକନ୍ତି—"ବାପା, ଥଣ୍ଡା ଲାଗିବ—କୋଇଲା ଗୁଣ୍ଡ ପଡ଼ିବ ।" ଷ୍ଟେସନରେ ଗାଡ଼ି ରହିଲେ ମୁଁ ପ୍ଲାଟଫର୍ମରେ ଓହ୍ଲାଇପଡ଼େ ଓ ଗାଡ଼ି ଛାଡ଼ିଲେ ପୁଣି ଚଢ଼େ । ମନର ଚଞ୍ଚଳତାକୁ ଏଡ଼ିବା ପାଇଁ ମୁଁ ଏମିତି କରୁଥିଲି । ଏଣିକି ବୁଢ଼ୀ ସେଥିରେ ବାଧ ଜଗିଲେ । ମୁଁ ଖାଲି ସେହି ଟ୍ରେନ୍‌ରେ ତାଙ୍କର ଅଡ଼କୁ ଚାହିଁ ବସିଥାଏ, ଆଉ ସେତକରେ ସେ ଭାରି ଆନନ୍ଦ ପାଉଥାନ୍ତି ।

ମଝିରେ ମୁଁ କହିଲି, ଆଉ "ଅଧଘଣ୍ଟା ପରେ କଟକ ପଡ଼ିବ ।" ବୁଢ଼ୀ ଚମକି ପଡ଼ିଲାପରି ହୋଇ କହିଲେ, "ଏତେ ଶୀଘ୍ର ?" ତା'ପରେ କହିଲେ ଯେ ମୋର ବହୁତ ଅସୁବିଧା ହେଉଛି—ସେଥିପାଇଁ କଟକ ପାଇଁ ଏତେ ବ୍ୟସ୍ତ । ମୁଁ କହିଲି, "ନାହିଁ ମାଉସି, ଅସୁବିଧା ଯାହା ଥିଲା ବା ହେଉଥାଆନ୍ତା, ତମ ଦୟାରୁ ଏତେ ସୁବିଧାରେ— ।" ସେ ମୋର ପାଟି ବୁଜି ଧଇଲେ, "ଥାଉ ବାପା, ଘରେ ଯାଇ କହିବ—ମୋ ଆଗରେ କହିବା ମୁଁ ଆଉ ଶୁଣିନାହିଁ ।"

କଟକ ପାଖ ହୋଇ ଆସୁଥାଏ । ମନ ମୋର ଚଞ୍ଚଳ ହେଉଥାଏ । ଶେଷରେ ପଚାରିଲି, "ଆଚ୍ଛା ମାଉସି, ବେଳ ତ ଆସି ହେଲା, ତମର ପରିଚୟ ପାଇଲି ନାହିଁ । ମୋର ପରିଚୟ ତୁମେ କେତେବେଳୁ ନେଲଣି । ମୋର ବର୍ତ୍ତମାନ ଦାବୀ ଅଛି ଜାଣିବା ପାଇଁ, ତମର

କଥା ।" ସେ କଥା ବୁଲେଇ ଦେଇ କହିଲେ, " ହିଁ ପୁରିଟା ଭାରି ଭଲ ଜାଗା, ନୁହେଁ ?"

ମୁଁ ଭିତରେ ପଚାରୁଥିଲି—ସେମାନେ କିଏ ଅଜ କାହିଁକି ମୋତେ ଏତେ ଆଦର ଅଭ୍ୟର୍ଥନା କଲେ ? ମୋର ମନେ ହେଉଥାଏ ଯେ ଏମାନେ ମତେ ଏମାନଙ୍କର କୌଣସି ଆତ୍ମୀୟାଙ୍କୁ ବିବାହ ଦେବାପାଇଁ ଲଳାୟିତ । ସେଥିପାଇଁ ମୋର ଅଗ୍ରହ ମଧ୍ୟ ବଢ଼ିଲା ।

ପୁଣି ପଚାରିଲି, "ମାଉସୀ, କଟକ ଅସି ହେଲା, କହିଲ ନାହିଁ, କାହିଁକି ଏହି ଅଧମ ଉପରେ ଏତେ ସ୍ନେହ ?" ଏତିକିରେ ସେ କାନ୍ଦି ପକାଇଲେ । ବଡ଼ ଅକୁଳ କାନ୍ଦଣା । ତାଙ୍କର ହାତଟି ଭିତରେ ମୋର ହାତ ଥାଏ, ସେ କାନ୍ଦୁଥାନ୍ତି । ମୁଁ ବଡ଼ ଅସୁବିଧାରେ ପଡ଼ିଲି । ପକେଟରୁ ରୁମାଲ କାଢ଼ି ତାଙ୍କର ଲୁହ ପୋଛି ଦେଲି, କିନ୍ତୁ ତାଙ୍କର କାନ୍ଦଣା ସରିଲା ନାହିଁ—ବଢ଼ିଲା ।

ବୁଢ଼ାଟି ଆସି ପହଞ୍ଚି ବୁଝେଇଲେ । ମୁଁ ସେତେବେଳେ ଖାଲି ବକବକ କରି ଶୁଣୁଥାଏ । କେତେବେଳକେ ବୁଢ଼ାଟି କହିଲେ, "ବାବୁ, ତମରି ଭଳି ଗୋଟିଏ ପୁଅ ଆମର ଥିଲା । ସେ ଏହି ମାସେ ହେବ ପାଟନାରେ ନିଉମୋନିଆରେ ମରିଗଲା । ଆମର କେହି ନାହିଁ । ତାହାର ମୁହଁରେ ନିଆଁ ଦେଇ ଆସିଛୁ ତୀର୍ଥ କରିବା ପାଇଁ—" ସେ ଆଉ କହି ପାରିଲେ ନାହିଁ । ତାଙ୍କର ଆଖି ପାଣିରେ ଭାସୁଥାଏ ।

ସେତେବେଳେ ମୋର ମନରେ ଆଉ କଟକ ନ ଥାଏ ବା ମୋର ବୋଉର ଅଗ୍ରହଭରା ଆଖି ନ ଥାଏ । ସେଇଠି ମୁଁ ଛୁଆଟା ହେଇ ଉପରର ରେଲିଙ୍ଗ୍ ଧରି ଭାବୁଥାଏ, ଦୁନିଆରେ କେତେ ଝଡ଼ ବତାସ ବହିଯାଉଛି । ଏହି ବୁଢ଼ାବୁଢ଼ୀ ଦୁହିଙ୍କ ଉପର ଦେଇ ଯେଉଁ ଝଡ଼ା

ଯାଉଛି ତାହାକୁ ସେମାନେ ସମ୍ଭାଳି ନେଉଛନ୍ତି । 'ହା ଭଗବାନ୍'—ଏଇ କଥା ପଦକ ମୋ ଭଳି ଉଦ୍‌ବେଗର ମନରୁ ବି ବାହାରି ପଡ଼ିଲା ।

ସେମିତି ଛୁଡ଼ା ହେଉଥାଉ—କଟକରେ ଆସି ଗାଡ଼ି ପହଞ୍ଚିଲା । ସେତେବେଳକୁ ବୁଢ଼ାଟି ଅସି ପ୍ରକୃତିସ୍ଥ ହୋଇଗଲେଣି । କୁଲି ଡାକି ମୋର ଜିନିଷପତ୍ରର ଓହ୍ଲେଇ ଦେଲେଣି । ମୁଁ ସେମିତି ବୁଢ଼ୀ ପାଖରେ ବସିଥାଏ, ଅଉ ସେ ମୋର କାନ୍ଧରେ ମୁଣ୍ଡ ଥୋଇ ଅଧୀର ହୋଇ କାନ୍ଦୁଥାନ୍ତି—ମୁଁ ଚୁପ୍ ହୋଇ ବସିଥାଏ ।

ଗାଡ଼ି ଯିବାବେଳ ହେଲା—ଉଠିବାପାଇଁ ମନ ହେଉ ନ ଥାଏ । ତଥାପି ଉଠିଲି । ବୁଢ଼ୀଙ୍କି କ'ଣ କହିବି ? କ'ଣ କହି ସାନ୍ତ୍ୱନା ଦେଲେ ମୁଁ ସୁଛୁଖନ୍ତରେ ବିଦାୟ ହେବି, ଭାବି ଠିକ୍ କରି ପାରିଲି ନାହିଁ । ବୁଢ଼ାଟି ଆସି ପାଖରେ ଠିଆହୋଇ ମତେ କହୁଥାନ୍ତି, "ବାବୁ, ଉଠ, ବେଳ ହେଲା । ସେ ସେମିତି ଭୁନ ହୋଇଯିବେ ।"

ତାଙ୍କର ମୁହଁକୁ ଚାହିଁଲି—ସତରେ ଗାଡ଼ି ହୁଇସିଲ୍ ଦେଲାଣି । ଉଠି ଠିଆହେଲି । ବୁଢ଼ୀଙ୍କର ପାଦଧୂଳି ନେଲି—ସେ ଦେଖି ନାହାନ୍ତି । ସେତେବେଳେ ବୋଧହୁଏ ଅଚେତ । ବୁଢ଼ାଙ୍କୁ ଗୋଡ଼ ଧରି ନମସ୍କାର କଲି । ଆଉ ବେଳ ନାହିଁ—ଗାଡ଼ିରୁ ଓହ୍ଲେଇଗଲି କଟକର ମାଟି—ମୋର ବୋଉ ସେଠି ଅଛି ।

ଗାଡ଼ିଟିକୁ ଚାହିଁଥାଏ—ତାହାର ମୁହଁ ଦିଶିଲା ନାହିଁ । ବୋଧହୁଏ ବୁଢ଼ାଟି ସେତେବେଳେ ତାଙ୍କୁ ସାନ୍ତ୍ୱନା ଦେଉଥାନ୍ତି । ଷ୍ଟେସନ୍‌ର ଅଲୁଅ ପାରିହୋଇ ଗାଡ଼ି ଚାଲିଗଲା—ତାହାର ମୁହଁ ଦିଶିଲା ନାହିଁ । ମୋର ଛାତି ଭିତରେ କାନ୍ଦ ଉଠିଲା—ଆଃ, ବୁଢ଼ୀଟିକୁ ସେମିତି ଛାଡ଼ିଦେଲି ! ସେତେବେଳେ ତ ତାହାର ମା'ର ମନ—କେତେ

ଅଢ଼ରଙ୍କର ମଝେ ଧାନକ୍ଷପାଇଁ କିଣିଥିଲେ । କିନ୍ତୁ ତାଙ୍କର ପରିଚୟ ମୁଁ ପାଇଲି ନାହିଁ ।

ଲୁଲ୍ ବ୍ୟସ୍ତ ହେଲା—ସାଙ୍ଗରେ ଅପିଲ୍ ଗାଡ଼ିକୁ । ବାଟରେ ସୂର୍ଯ୍ୟଅସ୍ତ ଅନ୍ଧାର ହୋଇଥାଏ, ଅକାଶରେ ଖେଇ ଫୁଟିଲା ପରି ତାରା ଯାଉଥାଏ । ଆଉ ସୂର୍ଯ୍ୟଅସ୍ତର ଏଠୁ ସ୍ବପ୍ନ ଅଲ୍ଲଅରେ ଦିଶୁଥାଏ, ଜଣକର ତରୁଣ ମୂର୍ତ୍ତି—ସେ ମୋର ମା'ର ଛବି ନୁହେଁ—ସେହି ବୁଢ଼ୀଟିର । ତାହାର ଭାଙ୍ଗଲା ମୂର୍ତ୍ତିରେ ଲହର ଧାର—ମୋର ଛାତି କରତ ହୋଇ କୋହ ଉଠୁଥାଏ ।

‘ଆହା, ତାଙ୍କୁ ମୁଁ ଚିହ୍ନେ ନା’—

---

# ପୋଡ଼ାଦାଗ

## ( ୧ )

ସୃଷ୍ଟିର ନିୟମରେ ସୁଖ ଓ ଦୁଃଖ ଏକାଠି ଗୁନ୍ଥି ହୋଇ ରହିଛନ୍ତି । ସୁଖ ଖୋଜିଗଲେ ଯେ ଦୁଃଖ ନ ମିଳିବ, ଏମିତି କିଛି ଧାରିକାଠ ନାହିଁ ।

ଯୁବକ ଦାମୋଦରକୁ ଆଜି ଯେ ତାହାର ସାଙ୍ଗସାଥୀ, ପରିଚିତ ଅପରିଚିତମାନେ କଲେଜର ଦରପାଟିଆ ବୋଲି କହି ନାକ ଟେକନ୍ତି, ତାହାର ମୂଳରେ ବୁଦ୍ଧିହୀନ, ଅଳସୁଆ ଦାମୋଦର ନାହିଁ । ଦାମୋଦର ପିଲାଦିନୁ ମନୁଆଁ, ଭଲ ପଢ଼େ, ଯାହା ଶୁଣେ ତାହାକୁ ମନେ ରଖିପାରେ । ଅଳ୍ପ କଥାରୁ ବହୁତ କଥା ଶିଖିପାରେ, ହସିପାରେ, ସହିପାରେ, ଖଟିପାରେ ଓ ପରକୁ ଆପଣାର କରିପାରେ । ସେ ଯେ ଭଲହୋଇ ସଂସାରର ଜଣେ ଯୋଗ୍ୟ ମଣିଷ ହେବ, ଏକଥା ତାର ପିଲାଦିନର ଚଳନ୍ତିରୁ ଭଲ ବୁଝା ପଡ଼ୁଥିଲା ।

ଦାମୋଦର କଲେଜରେ ଇତିହାସ, ଓଡ଼ିଆ ଓ ଅର୍ଥ ବିଜ୍ଞାନ ନେଇ ଆଇ. ଏ. ପଢ଼ୁଥିଲା । ଯେବେ ଓଡ଼ିଆ ପଢ଼ାବହି କ୍ଲାସ୍‌ରେ ଅଧ୍ୟାପକ ପଢ଼ାଉଥିଲାବେଳେ ତାହାର ହଠାତ୍ ମନେ ହେଲା ଯେମିତି- ଖଣ୍ଡେ ବହି ନ ଲେଖିଲେ ଜୀବନ ବ୍ୟର୍ଥ ।

ବୋଝଂର ହୁମ୍‌କୁ ଫେରିଅସି ସେଦିନ ସେ କାହାକୁ କିଛି ନ କହି ସେଇକଥା ଭାବିଲା । ଖଣ୍ଡେ ବହି ସେ ଲେଖିବ । ସେଇ ବହି ହେବ ଭଲ ବହି । ସମସ୍ତେ ପଢ଼ି ପ୍ରଶଂସା କରିବେ । ବିଶ୍ୱବିଦ୍ୟାଳୟ ତାହାର ବହିକୁ କଲେଜ ଓ ସ୍କୁଲରେ ପଢ଼ାଇବେ । ବଡ଼ବଡ଼ ଅଧ୍ୟାପକ, ଛାତ୍ର ଓ ସାଧାରଣ ପାଠକ 'ଦାମୋଦରର ବହି' କଥା କହି ତାରିଫ୍ କରିବେ । ଦାମୋଦର ସେମାନଙ୍କର ଆଗଦେଇ ନମ୍ରହୋଇ ଚାଲିଯାଉଥିବ ।

ମରିଗଲେ ବି ବହିଟି ହେବ ତାହାର ସ୍ମୃତିସ୍ତମ୍ଭ । ଅଙ୍ଗ ମଶାଣିରେ କି ସାହିତ୍ୟସମାଜରେ ତାହାପାଇଁ ପଥର ଖଣ୍ଡେ ଖୋଳାଇବା ଦରକାର ପଡ଼ିବ ନାହିଁ । ବହିଟି ଭଲ ହୋଇଥିଲେ ଓଡ଼ିଆ ସାହିତ୍ୟର ଇତିହାସ ଭିତରକୁ ଚାଲିଯାଇ ଯୁଗଯୁଗ ଧରି ସେଟି ହେବ ସମସ୍ତଙ୍କର ଆଖି ଆଗକୁ ଆସୁଥିବ ।

ଏହି ରଙ୍ଗବୋଳା କଳ୍ପନା ଆଗରେ ତାହାର ବସ୍ତୁବ ଓ ଆଇ. ଏ. ପାଠପଢ଼ା ଅତି ତୁଚ୍ଛ । ଦାମୋଦରର ଆଖି ଆଗରେ ସେହି ସ୍ୱପ୍ନ-କଳ୍ପନା ଖାଲି ଘେରି ବୁଲିଲା । ଦାମୋଦର ଦାନ୍ତକୁ ଦାନ୍ତରେ ଲଗାଇ ପ୍ରତିଜ୍ଞା କଲା ଯେ, ସେ ଲେଖକ ହେବ ।

ବହିରେ ଲେଖା ହୋଇଛି ମଣିଷର ଦୃଢ଼ ପ୍ରତିଜ୍ଞଠାରୁ ବଳି ବଡ଼ କିଛି ନାହିଁ । ପ୍ରତିଜ୍ଞା ରଖି ମାଡ଼ିଗଲେ ପାହାଡ଼ ଟଳିଯିବ । ଦାମୋଦର ସେଦିନ ମନେ କରିଥାଏ, ସେ ଖଣ୍ଡେ ବହି ଲେଖି ଅମର ହୋଇଯିବ । ଏ କାମଟିରେ ସେ ତାହାର ଆଇ. ଏ. ପରୀକ୍ଷାର

ସୁଖ ଦୁଃଖ ସବୁ ତାଙ୍କି ଦେଇ କେତେଦୂର କେଜାଣି ଅଗେଇଯିବ ।
ଯେ ଦେଖିବେ ସେ କହିବେ 'ମଣିଷ କହିଲେ ଦାମୋଦର ।'

ଯୁବକର ଖିଆଲ୍ ଗୋଟିଏ ପାଗଳାମି । ପାଗଳର ଯେମିତି ଅପେଚ୍ଛାର ବିଗୁର ରହେନାହିଁ ଖିଆଲର ଠିକ୍ ସେମିତି ଅପେକ୍ଷା ନଥାଏ । ଯୁବକର ଖିଆଲ ସବୁଠାରୁ ବଳ ବଳବାନ୍ ଉନ୍ମାଦନା । ଦାମୋଦରର ଲେଖକ ହେବାପାଇଁ ଯେଉଁ ଖିଆଲ ହଠାତ୍ ଉଠିଲା ସେଥିରେ ତାହାର ଅଳ୍ପ ବୟସର ବିଗୁରବୁଦ୍ଧି, ଅଳ୍ପ ପାଠର ସଂଯମ ସାଧନା କିଛି ଶାସନ କରିପାରିଲା ନାହିଁ ।

ବଜାରରୁ କିଛି କାଗଜ କିଣିଆଣି ଦାମୋଦର ବସି ରୁମ୍‌ରେ ଲେଖିଲା । ସେଦିନ ସନ୍ଧ୍ୟାବେଳେ ସେ ଉଦାସ-ମନରେ ସେହି କାମରେ ତାହାର ଶୁଭ ଦେଲା । ବନ୍ଧୁମାନେ ବାହାରୁ ବୁଲି ଆସିଲା-ବେଳେ ଦେଖିଲେ ଦାମୋଦର ବିଜୁଳି ଆଲୁଅ ତଳେ ନିବିଷ୍ଟ ହୋଇ ଖାତା ଉପରେ କଲମକୁ ସିଧ କରି ଧରି କ'ଣ ଯେମିତି ଭାବୁଛି । ଆଖିରେ ଗୋଟାଏ ଖାଲି ଖାଲି ଭାବ ।

କ'ଣ ହେଉଛି ବୋଲି ଜଣ ଜଣ ହୋଇ କୋଠରୀ ଭିତରକୁ ପଶି ଦାମୋଦରକୁ ପଚାରନ୍ତି । ସେ ବିରକ୍ତହୋଇ କହେ ଗୋଟାଏ କ'ଣ ଲେଖିବ ବୋଲି ସେ ଏକାଗ୍ରତା ଅଭ୍ୟାସ କରୁଛି, କିନ୍ତୁ ତାହାର ବିରକ୍ତି ବନ୍ଧୁମାନଙ୍କୁ ରଟାଏ । ସେମାନେ ଦୁଆର ଡେଇଁ ବାରଣ୍ଡାରେ ତାଙ୍କୁ ଶୁଣାଯିବା ଭଳି କହନ୍ତି 'ଦାମ ଗୋଟାଏ କ'ଣ ଲେଖୁଛି ।'

ସେଦିନ ମେସ୍‌ରେ ଖାଇଲାବେଳକୁ ଅନେକ ଲୋକଙ୍କ ମୁହଁରେ ସେହି ପଦେ କଥା 'ଦାମ ଗୋଟାଏ କ'ଣ ଲେଖୁଛି ।' ଅନେକଙ୍କର ଅନେକ ଗଳ୍ପ ଓ ଉପନ୍ୟାସ ଲେଖା ହେବାପାଇଁ ଥିଲା ନିଜର ସମସ୍ୟାମାନଙ୍କ ବିଷୟରେ । ସେମାନେ ଭାବିଲେ ସେହି

ସୁବିଧା ନେଇ ଦାମୋଦରର ଲେଖାରେ ସେମାନଙ୍କର ସଫଳ ଓ ବିଫଳ କାହାଣୀ ଓ ଅନ୍ୟାନ୍ୟ ବିଷୟରେ ଥିବା ମତାମତ ଲେଖିଦେଇ ଦେଇଯିବେ ।

ସେଥିପାଇଁ କେତେକ ଅସି ଦାମୋଦରକୁ ଖୁସାମଦ୍ କରି ଚାଲିଗଲେ । ଦାମୋଦର ନାଁ କରୁ ଓ ଲେଖୁ । ଖାଲି ବସି ବହି ପଢ଼ିଲେ କଣ ହେବ ? ସେଣେ ଗୁଲିଗଲେ ସେମାନେ କ୍ୟାରମ୍ ଓ ତାସ୍ ଖେଳ । ମେସ୍ ଗୁଡ଼କର ଅସି ଦାମୋଦରକୁ ତାହାର କୋଠରୀରେ ଭାତ ଥାଳ ଦେଇଗଲା । ସେତେବେଳକୁ ଦାମୋଦର ଖାତାଣ୍ଡ କାଗଜ ଉପରେ ଏଣୁ ତେଣୁ ଖାଲି ଗାରେଇଛି । ଲେଖା ଅରମ୍ଭ ହୋଇନାହିଁ ।

( ୨ )

ଦାମୋଦର ସେଦିନ ବହୁତ ରାତିଯାଏ ରହିଲା । କିନ୍ତୁ ଲେଖା ହେଲନାହିଁ କି ନିଶା ଭାଙ୍ଗିଲ ନାହିଁ । ପ୍ରେରଣା ପାଇବାପାଇଁ ସେ ବହୁତ ଧାନ କରିବାଇଲା, ପାଣି ପିଇଲା, ଗୁ'ଖାଇଲା, ତଥାପି ଲେଖା ଅସିଲ ନାହିଁ ।

ତାହାର ଖାଲି ମନେ ପଡ଼ିଲା, ମହାକବି କଥା । ହଠାତ୍ ବଗପକ୍ଷୀ ଯୁଗଳ ଭିତରୁ ଗୋଟିଏ ପକ୍ଷୀ ବାଣୁଅର ଶର ମାଡ଼ରେ ଅଘାତ ପାଇବାରୁ ରାମାୟଣ ଅରମ୍ଭ ହୋଇଥିଲା । ଭଲ ଲେଖା ଯେମିତି ହଠାତ୍ ପୁଅର୍ପାର କେଉଁଠୁ ଫିଟିଯିବ । ସେଥିପାଇଁ ସେ ନ ଶୋଇ ଅଖି ମେଲି ଦେଇ ଭାବନାରେ ତନ୍ମୟ ହୋଇ ରହିଲା ।

ତହିଁ ଅରଦିନ ସକାଳେ ତାହାର ବନ୍ଧୁମାନେ ପୁଣି ତାହାର କୋଠରୀକୁ ଅସିଲେ, ଦାମୋଦର କଣ ଲେଖିଲା ଜାଣିବାପାଇଁ; କାରଣ ସମସ୍ତଙ୍କର ଏକ୍ଟ୍ରକାର ଧାମ ଭିତରେ ଜଣେ ନୂଆ କାହିଁ ଏ ଲେଖିବାକୁ ଯାଉଛି, ତେଣୁ ସେ ଗୋଟିଏ ଅଶ୍ଚର୍ଯ୍ୟ ।

ସେଦିନ ବି ସେ ସେମିତି ବିରକ୍ତ ହେଲା । ତା'ହାର ଦରଖାସ୍ତ ଦେଖିବାପାଇଁ ଜଣ ଜଣ ହୋଇ ଆସନ୍ତି । ହିଂସା ବସି ଟିକିଏ ଅଙ୍କ ମିଠିକା ମାରି ସେହି କଥାଟି ପଚାରନ୍ତି । ଗାଲି କି ଶଲ ଶୁଣିଲେ ପୁଣି ଦାନ୍ତ ଦେଖାଇ ଫେରିଯାନ୍ତି । ମାତ୍ର ଦାମୋଦର ସେହି ଭାମରେ ହୋଲାଉଲୋଯାଇ ଲାଗି ରହିଥାଏ ।

ଗାଧୋଇ ଖାଇ ସମସ୍ତେ କଲେଜ ଗଲେ । ଦାମୋଦର ଅସି ନିକାଞ୍ଚନ ଛାତବାଡ଼ରେ ତାହାର କୋଠରୀରେ କବାଟ ବନ୍ଦକରି ନିଜର ଖିଆଲ ପଛରେ ଲାଗିରହିଲା । କଲେଜ ସାରି ସେମାନେ ଫେରିଲେ । ଦାମୋଦରର ତନ୍ମୟତା ଭାଙ୍ଗିଗଲା । ସେ ଦେଖିଲା ଯେ ପ୍ରଥମଥର ପାଇଁ ସେ କଲେଜକୁ ନ ଯାଇ କୋଠରୀରେ କାଗଜ କଲମ ଧରି ବସିରହିଛି, କିନ୍ତୁ ଲେଖା ତାହାର ପାଖ ପଶିଲା ନାହିଁ ।

( ୩ )

ଦୁଇଦିନ ଏମିତି ଅନିଦ୍ରମ ସାଧନା ଭିତରେ କଟିଗଲା । ଲେଖକ ହେବାପାଇଁ ଚେଷ୍ଟା କରୁଥିବା ଗୋଟିଏ ଯୋଡ଼ିଏ ସାଙ୍ଗ ଅସି ଜୁଟିଲେ ଅଫିମ ପାଖରେ ଅଫିମ ଜୁଟିଲାପରି । ଦାମୋଦରର ସାଙ୍ଗ ହାଥ ବଦଳାଇଲେ । ଭଲ ହେଉଥିବା ପିଲା ବଦଳରେ ସେମିତି ଲେଖିବାକୁ ଚେଷ୍ଟା କରୁଥିବା ପିଲା ଅସି ପହଞ୍ଚିଲେ । ତଥାପି ଦାମୋଦର ମନେ ମନେ ଘାରୁଥାଏ ସେ ଅନ୍ୟାନ୍ୟ ଲେଖକ-ମାନଙ୍କଠାରୁ ଭିନ୍ନ । ସେ ବଡ଼ ଲେଖି ବଡ଼ ହେବ ।

କିଏ ଉପଦେଶ ଦେଲା ଆଗେ ଅନୁବାଦ କଲେ ପରେ ନିଜେ ଲେଖିବା ସହଜ । କିଏ କହିଲା ବଙ୍ଗଳା ବହି ପଢ଼ି ଲେଖିବାପାଇଁ, ଅଉ କିଏ କହିଲା ନିଜର ଜୀବନ-କାହାଣୀ ମନେ ପକାଇ ସେମାନଙ୍କୁ ନାୟକ ନାୟିକା କରି ତାଙ୍କର କଥା ଲେଖିଲେ ଉପନ୍ୟାସଟି ସେହି ବାସ୍ତବ ଘଟଣାର ମେଳରେ ଭରିଅଥିବ ବଞ୍ଚିରହିବ ।

ଦାମୋଦରକୁ ଶେଷ ଉପଦେଶଟି ଭଲପରି ଲାଗିଲା । ଅର୍ଥାତ୍ ନିଜର ମଣିଷ ପରି ଜଣେ ତାହାର ଥିଲା ଅନେକ ଧନ ଥିଲେ । ବିଚାରି ଦାମ ଅପିଲ ପଢ଼ି ମଣିଷ ହେବାପାଇଁ, ସେମିତ ସେ ଗୃହିଣୀ ଛାଡ଼ିଦେଇ ସଂସାର କରିବା ପାଇଁ । ତାହାର କଥା ଦାମୋଦର ମନରେ ଗମ୍ଭୀର ରେଖାପାତ କରନ୍ତି । ସେ କଥା ଲେଖିଗଲେ ବହୁ ନିଷ୍ଟପ୍ତ ହେବ, ବହୁ ଭଲ ହେବ ଓ ଦାମୋଦର ବଡ଼ ଲେଖକ ହେବ ।

( ୪ )

ଅଇ. ଏ. ପଢ଼ୁଥିବା ସତରବର୍ଷର ଯୁବକ ଦାମୋଦର, ସଂସାର କଣ ସେ ଜାଣେ କି ନାହିଁ; ସେ ମନେକରେ ସେ ସବୁ ଜାଣେ । ଭାବିଲେ କବି ହୋଇ ହେବ, ଭାବିଲେ ଲେଖକ ହୋଇ ହେବ, ଭାବିଲେ ନେତା ହୋଇ ହେବ । ଏଇଆ ତାହାର ଧାରଣା ।

ଏହି ଧାରଣା ନେଇ ସେ ଗୋଟାଏ ସାମୟିକ ଖିଆଲ ପଛରେ ଲେଖକ ହେବାପାଇଁ ଋଲିଲା । ନିଜର ଚେଷ୍ଟା ଓ କାଗଜର ପାହଚର୍ଯ୍ୟ, ଆଉ ବାଧାବନ୍ଧନ କିଛି ନାହିଁ । କଲେଜର ପଢ଼ା ଯାହା ଗୋଳମାଳ କରନ୍ତା, ସେଟିକି ମୋଟେ ନ ଗଲେ ସେଥିରୁ ଛୁଟି ।

ଦାମୋଦର ତାହାର ନାୟିକାର ଚରିତ୍ର ଅଙ୍କିବ ବୋଲି ଅଧା ଅଧା ହସି କେତେ ତାହା କଥା ଭାବିଲା ତାହାର କଳନା ନାହିଁ, କିନ୍ତୁ କେମିତ ସେ ତାହା କଥା ଲେଖିବ ? କେଉଁଠୁ ଆରମ୍ଭ କରି କୁଆଡ଼କୁ ନେଲେ ତାହା ବହୁ ଭଲ ହେବ, ସେସବୁ କିଛି ଜାଣି ନ ଥିବାରୁ ଅନ୍ଧପରି ଦଗ୍ଧ ହେଲା । ଖାଲି ତାହାର ମନରେ ଥାଏ ଖଣ୍ଡେ ବହୁ ଲେଖିପାରିଲେ ସେ ଧନ୍ୟ ଓ ପ୍ରସିଦ୍ଧ ହୋଇଯିବ ଚିରଦିନକୁ ।

ତାହାର ତାଇବାହି ସ୍ୱାମୀ ଘରେ ସେମିତ ହୁଏତ ସବୁଥିବ କୌଣସିପ୍ରକାରେ ପୁଅଟିଏ ହେଲେ ସେ ମନ୍ଦୀ ଭି ଅନ୍ୟ ଭଣ ହୋଇଯିବ କିନ୍ତୁ ପୁଅଟିଏ ହେଉ ହେଉ ଦଶମାସ ଲଗେ ଅନ୍ୟ ସେ ପୁଅ ମନୀ ହେଉ ହେଉ ତାହାର ଜୀବନ ବିତଯାଏ । ଏତକ ମା'ର କଳ୍ପନାକୁ ଯେମିତ ଫୁସ୍ ଅସିପାରେ ନାହିଁ, ସେମିତ ଲେଖକ ଦାମୋଦରର କଳ୍ପନା ଭିତରକୁ ଶରତ୍ପସିଦ୍ଧ ଉପନ୍ୟାସ ଲେଖିବାର ଶ୍ରମ ଓ ପ୍ରାସଙ୍ଗିକ ଅସୁବିଧା କଥା ମନକୁ ଅସିଲା ନାହିଁ ।

ଅଠ ଦଶ ବର୍ଷ ପାଠ ପଢ଼ିଲେ ମାଟ୍ରିକୁଲେସନ୍ ପଶ୍ ହୁଏ । ତାହାପରେ ଅନ୍ୟ ଚୁରବର୍ଷ ପଢ଼ି ବି. ଏ. ହୁଏ । ଏମିତ ଯେ ଯୋଗ୍ୟତା ସଙ୍ଗରେ ସମୟର ଗୋଟିଏ ପ୍ରାସଙ୍ଗିକ ସମ୍ବନ୍ଧ ଅଛି, ଏତକ ଦାମୋଦର ଜାଣି ନଥିଲା । ସେଥିପାଇଁ ସତର ବର୍ଷ ବୟସରେ ସେ କଲେଜ ବନ୍ଧଭର ଶରଦାନକୁ ନାଁ କଲ୍ପଭଳ ଉପନ୍ୟାସରେ ମନ ଚଳାଇଲା ଓ ସେହି ଲେଖାଲେଖି ବିଷୟ ଖୁବ୍ କମ୍ ବୁଝୁଥିବା ଲୋକେ ତାହାକୁ ସେଥିରେ ଅଜବ ଅଜବ ଠେଲିଲେ ।

( ୫ )

ହଠାତ୍ ଦିନେ ଫୁଅରି ଖୋଲିଗଲା । ଦ'ପନ୍ଦଲେଖି ହୋଇଗଲା । ଦାମୋଦର ତାହାକୁ ଥରକୁ ଥର ପଢ଼ିଲା, ଯେମିତ ପ୍ରଥମ ଅନୁଭୂତିର ଅତି ମାମୁଲି କଥାଗୁଡ଼ିକ ଲୋକ ଗଣ୍ଠିଧନ କରି ଜଯୁଥାଏ ମନ ଭିତରେ ।

ଦାମୋଦର ସେହି ଲେଖାକୁ ଠେଲି ଚଳେଇଲା । ନୂଆ ସାଇକେଲ୍ ଚଢ଼ାଳଇଲାବାଲା ତାହା'ର ସାଇକେଲ ଚଳେଇ ଶିଖିଲା ପରି । ବହୁତ ଜାଗା ଢକା ହୋଇ ଟଗୋଟିଏ ଗୋଟିଏ ଶବ୍ଦ ବା ବାକ୍ୟ ଯୋଡ଼ା ହୁଏ ଯେମିତ ମୂଣ୍ଡରୁ ଗୋଡ଼ଯାଏ ଖଣ୍ଡେ ଖଣ୍ଡେ ଗହଣା ବନ୍ଧିଯିବ ।

ଏମିତ ତାହାର କଷ୍ଟ କଳ୍ପନା ଓ ଦୁର୍ବଳ ଭାବନାର ବୋଝ ବୋହି ଖଣ୍ଡେ ଖଣ୍ଡେ କାଗଜରେ ଅଗଡୁ ମାଡ଼ି ଗ୍ଲଲ୍ଲ । ଦାମୋଦରର ପ୍ରଥମ ନିଶା କଟିଗଲା । ଆଜି ସେ ତନ୍ମୟତା ଆସେ ନାହିଁ । ସେ ବେଳକବେଳେ କଲେଜ ଯିବା ଆରମ୍ଭ କଲା ।

କିନ୍ତୁ କ୍ଲାସ୍‌କୁ ଯିବାଯାଏ ମୁଣ୍ଡଟା ତାହାର ଖାଲି ରହେ । କ୍ଲାସ୍ ଭିତରେ ପହଞ୍ଚିଲାଣି ପ୍ରେରଣା ଗ୍ଲଲ୍ଆସେ । ଦାମୋଦର ଧାଇଁଆସେ ରୁମ୍‌କୁ । ରୁମ୍ ଭିତରେ ପହଞ୍ଚିଲାବେଳକୁ ପ୍ରେରଣା ଖସିଯାଏ । ସେ ଖାଲି କାଗଜ ଉପରେ କଲମରେ ଦାଗ ଦେଉଥାଏ ।

ଏମିତ ଲେଖା-ଜ୍ୱରରେ କେଇଦିନ ଏପାଖ ସେପାଖ ହୋଇ ଦାମୋଦର ତାହାର କଲେଜ ଯିବା ଏକାବେଳକେ ବନ୍ଦ କରିଦେଇ ଲେଖା ପଛରେ ଲାଗିଲା । କାରଣ ସେ ପଢ଼ିଛି ଯେ ଏକାଗ୍ରତା ଓ ଏକମୁଖୀ ସାଧନା ନଥିଲେ ବଡ଼ କାମ କରିହୁଏ ନାହିଁ ।

ସାଙ୍ଗସାଥିମାନେ ପଢ଼ିବାକୁ ଗଲାବେଳେ ଦାମୋଦରକୁ ଯେମିତ ପ୍ରେରଣାକୁ ଅପେକ୍ଷା କରି ବସିରହିବା ଅବସ୍ଥାରେ ଦେଖି-ଯାଇଥାନ୍ତି ଫେରିଲାବେଳକୁ ବି ଦେଖନ୍ତି ଦାମୋଦର ସେମିତ ଚଉକି ଉପରେ ବେଞ୍ଚ ପରି ଟେବୁଲ ଉପରକୁ ଝୁଙ୍କି ରହି ପ୍ରେରଣାକୁ ଅନେଇଛି ।

ସେଥିପାଇଁ ଯେ ଯାହା ରୁମ୍‌କୁ ଗଲାବେଳେ ଡାକଦେଇ ପଚାରନ୍ତି 'କିରେ ଦାମ, କି ଦାମ ବାବୁ, ପ୍ରେରଣା ଆସୁଛି, ନା ଡେରି କରୁଛି ?' ଶେଷକୁ ସମସ୍ତେ ଧରିନେଲେ ଦାମୋଦର ନାୟକ ଓ ପ୍ରେରଣା ନାୟିକା ।

( ୬ )

ଆଇ.ଏ. ପଢ଼ାର ଦ୍ୱିତୀୟ ବର୍ଷରେ ଏହି ବିକାର ଆରମ୍ଭ ହୋଇ ସରିଲାବେଳକୁ ଦାମୋଦରର ପ୍ରାୟ ସାଢ଼େ ତିନିମାସ

ଗଡ଼ଯାଇଛି । କଲେଜରେ କେବଳ କମ୍ ହୋଇଥିବାରୁ ସେ ଏ ବର୍ଷ ପରୀକ୍ଷାକୁ ବସୁଥାଇ ପାରିବ ନାହିଁ । ଗୋଟିଏ ପରୀକ୍ଷା ଦେଇ ନ ଥିଲା. ବର୍ତ୍ତମାନ ପରୀକ୍ଷା ନ ଦେବାର ଇଚ୍ଛା ବେଶି, କାରଣ ଆସନ୍ତା ବର୍ଷକୁ ବଢ଼ିଲେ ଭଲ ଫଳ ଦେଖାଇବ । ଅଙ୍କ ଲେଖା ହେଲା ଛ କୋଡ଼ି ଗୃହ ପୃଷ୍ଠା ।

ମନରେ ତାର କେତେ ଉତ୍ସାହ । ଘରୁ ଆଣିଥିବା ଟଙ୍କାରେ ଚଳିଛି । ବଡ଼ କଷ୍ଟରେ ବାହାନାରେ ଟଙ୍କା ଆଣି ପ୍ରେସରେ ଦେଇ ଛପିଲାବେଳେ ଗୃହ ସବୁରି ପଛରେ ସେତକ ଉଡ଼ିଯାଇଛନ୍ତି । ଏହା ଏତିକର ମୂଲ୍ୟ ଟଙ୍କାରେ ପ୍ରାପ୍ତ ଟଙ୍କା ଓ ସମୟରେ ଟଙ୍କା ମାପରୁ ଅଧିକ । କିନ୍ତୁ ତାହା ବଦଳରେ ସେ ମନେକରେ ଶହ ଶହ ବର୍ଷ ପରି ଲୋକଙ୍କର ଉପକାରରେ ଲାଗିଲା ଭଳି ସେ କେତେ ନୂଆ ଭାବ ଓ ଭାବନା ଦେଇଛି, କେତେ ସାମାଜିକ ଓ ମନସ୍ତାତ୍ତ୍ୱିକ ସମସ୍ୟାର ସମାଧାନ କରିଯାଇଛି ।

ଏହାପରେ ଅପ୍ରୋଜନ ଘରେ ଧରି ଖଣ୍ଡେ ପାଣ୍ଡୁଲିପି ତିଆରି ହୋଇଗଲାବେଳକୁ ବସିବସି ପରୀକ୍ଷା । ଘରୁ ଚିଠି ଆସୁଥାଏ ଦାମୋଦରର ପରିବାରର ସମସ୍ତେ ପରୀକ୍ଷା ଫଳକୁ ଚାହିଁ ବସିଛନ୍ତି । ଦାମୋଦର ତାଙ୍କର କୁଳ ଓ ଗାଁର ମାନ ରଖିବ । ଦାମୋଦର ଚିଠି ପଢ଼ି ଭାବେ ଯେ ସେହି ଆଶା ସଫଳ ହେବ, କିନ୍ତୁ ଅନ୍ୟ ବାଟ ଦେଇ । ଗାଁର ଓ ଘରର ଲୋକଙ୍କର ଦୂରଦୃଷ୍ଟି ଓ କଳ୍ପନା ନ ଥିବାରୁ କେଉଁ ବାଟର ଦୂରତା କେତେ ବୁଝିପାରୁ ନାହାନ୍ତି ।

( ୨ )

କୁକୁଡ଼ା ପେଟରେ ଅଣ୍ଡା ହେଲେ ସେତକ କେଉଁଠି ନ ଥୋଇବା ଯାଏ ତାକୁ ଭୋକ ଶୋଷ କିଛି କରେ ନାହିଁ । ସେମିତି ଲେଖା ଗୋଟିଏ ହୋଇଗଲେ ଲେଖକ ବାଟରକୁ ସେହି ଲେଖାକୁ

ନେଇ କୌଣସି ପ୍ରକାରେ ପ୍ରକାଶ କରେଇ ନ ପାରିଲେ ସେମିତି ଜିଦ ଶେଷ ହୁଏନାହିଁ । ନୂଆ ଲେଖକ ଓ ପ୍ରଥମ ଲେଖା ପ୍ରତି ଏହିଟି ଅତି ବେଶି ଘଟେ ।

ଦାମୋଦର ତାହାର ବହିଟିକୁ ଛାତି ପାଖରେ ରଖି କେତେଥର ପଢ଼େ । ତାହାକୁ ଅକଟି କରି ଧରି ଏଣେ ତେଣେ ପାଇ କେତେ କଟୁ ଶୁଣାଏ । ଯେ ନାପସନ୍ଦ କରେ ସେ ହୁଏ ଶତ୍ରୁ, ଯେ ତାରିଫ୍ କରେ ସେ ହୁଏ ପରମବନ୍ଧୁ ।

ଦାମୋଦର ତାର ବାଂଧବୀଟିକୁ ଭଲ ପାଇଲାବେଳେ ଠିକ୍ ସେମିତି ତାହାର କଳାରଙ୍ଗ, ଭୁରୁକୁଞ୍ଚା ମୁହଁ, ଠେଙ୍ଗାପିଟା କଥାସବୁକୁ ଭଲ ପାଉଥିଲା । ସମଜଦାର୍‌ମାନେ ସେହି ନୂଆ ଉପନ୍ୟାସଟିର ଅଶୁଦ୍ଧ ଭାଷା, ଅମର୍ଜିତ ଭାବ, ଅବାସ୍ତବ କଥାବସ୍ତୁ ଓ ଅନାପୃଣ ଚରିତ୍ରଗୁଡ଼ିକୁ ଖୁବ୍ ଭଲ ପାଇଲେ ।

ଏହିସବୁ ମିଶି ବହିର ନାମ ଦିଆଗଲା 'ଚଳନ୍ତିକା' । ତାକୁ ଯେତେବେଳେ ପଢ଼ା ହେଲେ ବି ଚିର ନୂତନ ଲାଗିବ ।

ପିଲାମାନେ ପରୀକ୍ଷା ଦେବାପାଇଁ ଗଲାବେଳେ ଦାମୋଦର ଗଲେ ବଜାର ଆଡ଼େ ତାହାର 'ଚଳନ୍ତିକା' ବହିର ପ୍ରକାଶକ ଠିକ୍ କରିବାପାଇଁ ।

ବଡ଼ ଆନନ୍ଦ ଓ ଆଶା ନେଇ ସେ କେତୋଟି ଜାଗା ଦେଖିଲା, ସୁବିଧା ହେଲାନାହିଁ । ନିରାଶାର ଗ୍ଲାନି ନେଇ କେତୋଟି ଅଜବ ଖୋଜିଲା । ସେଠୁ ଫେରି ସେ ଶଙ୍କିତ ହୋଇ ପୁଣି ବଳକା ଠାଏ ଅଧେ ଥାନରେ ପହଞ୍ଚିଲା । ସବୁଠାରେ ସେହି ନିରାଶାର ବାଣୀ— 'ତାହାର କାଗଜ ନାହିଁ', 'କାହାର ଟଙ୍କା ନାହିଁ' ଓ 'କାହାର ଇଚ୍ଛା ନାହିଁ' ଇତ୍ୟାଦି । କିନ୍ତୁ ବହିଟି ଭଲବୋଲି ବହୁତ ଲୋକ କହିଲେ । ଦାମୋଦର ଠିକ୍‌କଲା ନିଜେ ସେ ଛପେଇବ । ଏକା ଥରକେ

ସେ ଲେଖକ ଓ ପ୍ରକାଶକ ହୋଇ ଲକ୍ଷ୍ମୀ ଓ ସରସ୍ୱତୀଙ୍କର ବିବାଦ ନିଜଠାରେ ଭାଙ୍ଗିବ ।

କାରଣ ଅସଂଖ୍ୟ ଚିହ୍ନା ଓ ପାନ ବଦଳରେ ସେ ଅସୁମାର ପ୍ରଶଂସା ପାଇଲଣି । କହୁଛି ଏତେ ଭଲ ହୋଇଛି ଯେ ପ୍ରଥମ ପୃଷ୍ଠାରୁ ଅଧ୍ୟାଏ ପଢ଼ି ସମସ୍ତେ କହନ୍ତି ଯେ ସେଇଟି ଶ୍ରେଷ୍ଠ ବହି ।

( ୮ )

ବିଶ୍ୱବିଦ୍ୟାଳୟର ପରୀକ୍ଷା ଦେବ ବୋଲି ମିତ୍ରବନ୍ଧୁ ଘରୁ ଟଙ୍କା ଆଣିଲା । ସେଥିପାଇଁ ବୋର୍ଡ଼ିଂର ହାଉଟି ବନ୍ଦ ଥାଏ । ଏଣେ କଟକରେ ଦାମୋଦର ତାହାର ସାଇକେଲ୍‌ଟି ବିକିଲା । ଗୋଟିକ ଦାଆଗଲା କାଗଜ ପାଇଁ ଓ ଅରଟି ଛାପା ଖରଚ ପାଇଁ । ବହିର ଛାପାକାମ ଚାଲିଲା ।

ଦାମୋଦର ପ୍ରେସ୍‌କୁ ଧାଉଁଥାଏ । ଜଦ୍‌ବେଗ ସାଙ୍ଗରେ ତାଳରଖି ଛାପା କାମ ଅଗେଇ ପାରେ ନାହିଁ । ଆଉରି ଟଙ୍କା ଦରକାର ହେଲା । ଶେଷକୁ ସେହି ଟଙ୍କାପାଇଁ ହାତବନ୍ଧା ଘଡ଼ି ଆଉ ନିଜର ବହିପତ୍ର ବିକିଦେଲା । ଦରକାର ହେଲାରୁ ବନ୍ଧୁମାନଙ୍କଠାରୁ ହାତ-ଉଧାର ହୋଇ ମୋଟରେ ପ୍ରାୟ ତିନିଶହ ଟଙ୍କା ବଦଳରେ ହଜାରେକରୁ ଗୁବର୍ଣ୍ଣ ଉଣା 'ଚଳନ୍ତିକା' ଥରେ ରିକ୍‌ସାରେ ବୋହି ଦାମୋଦର ଅଫିସ ବୋର୍ଡ଼ିଂରେ ପହଞ୍ଚିଲା । ସେତେବେଳକୁ ଏହି ଦେଖାରେ ଗୋଟିଏ ଅଧେ ସାଙ୍ଗ ବି ଜୁଟିଲେଣି ।

ସେଦିନ ଚନ୍ଦ୍ରିଅରବିନ୍ଦଠାରୁ କିଛି ବହି ନେଇ ଦାମୋଦରଙ୍କ ଦୋକାନକୁ ଚାଲିଲା । ବିକି ଟଙ୍କା ଆଣିଲେ ସେ ତାହାର ଜରଜ ଶୁଝିଦେଇ କିଛି ଲାଭ ପାଇ ଫେରିଦେଲେ ଗୋଟିଏ ସ୍ୱାସ୍ଥ୍ୟକର ସ୍ଥାନରେ ବସି ବହି ଲେଖିବ ପୁଣି ଭଲେଇ ଖୋଲିବାଯାଏ ।

ବହି ଦୋକାନୀ କହିଲେ ବହି ବିକିହେଲେ ବର୍ଷ ଶେଷରେ ପଇସା ହିସାବ ହେବ । ଦାମୋଦର ଏଥିରେ ରାଜି ନୁହେଁ । ତେଣୁ ସେ ଦହରତିଯାକ ପରିକମା କରିବା ଆରମ୍ଭ କଲା ଗୋଟିଏ ଭଲ ଦୋକାନ ଖୋଜିବା ପାଇଁ, ଯେ ବହିକୁ ରଖି ନଗଦ ଟଙ୍କା ଦେବ । କିନ୍ତୁ ବହିର ମୂଲ୍ୟ କେହି ବୁଝିଲେ ତ ନାହିଁ । ଏଣେ ଲେଖକ ଦାମୋଦରର ପଙ୍କାପି ଉଡ଼ିଲାଣି । ମୂଲ୍ୟ ବି କମି ଆସିଲାଣି ।

ସେହି 'ଚଳନ୍ତିକା' ବହିରେ ଦାମୋଦର ଲେଖିଛି— ଏ ଅଳ୍ପପାଇଁ ଜୀବନ କଷ୍ଟ ନୁହେଁ, ବଞ୍ଚିବା ପାଇଁ ଧନ କଷ୍ଟ ନୁହେଁ, ଧନ ସଂସାରରେ ବଡ଼ ନୁହେଁ, ମନ ବଡ଼, ଇଚ୍ଛା ଥିଲେ ଉପାୟ ଅଛେ, ଇତ୍ୟାଦି କେତେ ବଡ଼ ବଡ଼ କଥା ।

( ୯ )

ଲେଖକର ଏହି ଏକର ଅଭିଶାପ । ସେ ନିଜେ ସଂସାର ଉପରେ ଟିପ୍ପଣୀ କାଟିପାଏ ଓ କହେ କବିତ୍ୱ ହେଉଛି ମେଣ୍ଢାମୁଣ୍ଡ । କିନ୍ତୁ ନିଜର ପେଟପାଟଣା କରିପାରେ ନାହିଁ । ନିଜେ ଧନକୁ ଶ୍ରେଷ୍ଠ ବୋଲି ଲେଖିଯାଏ, ଖୋଜେ ସେହି ଧନକୁ —ହାଁ ହାଁ ହୋଇ ।

ନିଜର କଲ୍ୟାଣ ଛାଡ଼ି ଦାମୋଦର ବହୁ ଲେଖି ଲେଖକ ହୋଇଥିଲା । ସେହି ଦେଶର ସୁଖପାଇଁ ସେ ତାହାର ଯୋତା ଛିଣ୍ଡାଇଲାଣି, ଲୁଗା ମଇଳା କଲାଣି, ଦେହ ପଞ୍ଜରା ହେଲାଣି, ସାଇକେଲ୍ ଘଣ୍ଟି ବିକି ଖାଇଲାଣି, ପରୀକ୍ଷାରେ ଫେଲ୍ ହେଲାଣି; କିନ୍ତୁ 'ଚଳନ୍ତିକା' ବହି ବିକି ହେଉନାହିଁ । ଯାତଗୁଣ୍ଡି ବହିଦୋକ ମାଗିଲା ପରେ କିଛି କିଛି ଆଣି ନିଜର ଖାଦ୍ୟ ଅନ୍ତ କଷ୍ଟରେ ଚଳାଉଛି ।

ଏବେ ସିଏ କୁଆଡ଼େ ? ପିଲାଟି ଜନ୍ମହୋଇ ବେଗରେ ଧାଇଁ କେଲେ ଯେମିତି ପିଲା ହେବାର ଆନନ୍ଦ ଲଭିଯାଇ ତାହାର ବହୁଗୁଣ

ଦୁଃଖ ଅଟଣ, ସେମିତି ବହୁ ବେପାରର ଅଘାତରେ ଦାମୋଦରର ଦେହ, ମନ, ଆଶା ସବୁ ମରି ଯାଉଥିଲେ—ଝୁଡ଼ି ପଡ଼ୁଥିଲେ ।

ତଥାପି ଦାମୋଦର ଭାବେ ତାହାର ବାହବା କଥା । ସେ ଦାମୋଦରକୁ ଛାଡ଼ିଗଲା ତାହାର ଅର୍ଜନ କରିବା କ୍ଷମତା ହୋଇ-ନାହିଁ ବୋଲି । ତାହାକୁ ସେ କ୍ଷମା ଦେଇଥିଲା 'ଚଳନ୍ତିକା' ବହିରେ ନାନା କଥା ଛଳରେ । ସଂସାରରେ ମନ ବଡ଼, ଧନ ଶ୍ରେଷ୍ଠ, ସ୍ୱାର୍ଥ ଶ୍ରେଷ୍ଠ ।

ଆଜି ବହି ଲେଖି ଏମିତି ହଇରାଣ ହେବାରୁ ସେ ମନେ କରୁଥିଲା, ସଂସାରରେ ଗୋଟିଏ କଥା ସତ—ସେ ହେଉଛି ଝୁଣୁଝୁଣୁ ଟଙ୍କା, ବାକି ସବୁ ମିଛ ଓ ଅଦରକାରୀ ।

ମେସ୍‌ରେ ଆଜି ବାକି ରହିପାରିବ ନାହିଁ । ଯେତିକି ବାକି ହୋଇଥିଲା ସେତିକି ନ ଦେଲେ ଆଉ ଖିଆ ହୋଇପାରିବ ନାହିଁ । ବାକି ପାଇଁ ପ୍ରତିଦିନ ଗୁରୁତର ଝାଗଡ଼ା ମିଳୁଥାଏ । କରଜ ଆଉ ମିଳିବ ନାହିଁ । ମାଗିଲେ ବି ଆଉ କେହି କିଛି ଦେଲେ ନାହିଁ ।

ଦାମୋଦର ପାଖରେ ଆଜି କିଛି ନ ଥାଏ । କେଇଖଣ୍ଡ ଛିଣ୍ଡା ନୋଟ୍‌ଖାତା, ଭଙ୍ଗା ପେନ୍‌ସିଲ୍, ଦୁଇଟା କଲମ ଓ କେତୋଟି ଖଣ୍ଡ ଛିଣ୍ଡାଲୁଗା ଓ କମିଜ୍ । ଆଜି ଥାଏ ପ୍ରାୟ ନ'ହେ 'ଚଳନ୍ତିକା' । ସେହି ସେତିକି ପାଇଁ ସେ ତାହାର ପଢ଼ା ଭିତରେ ବିପ୍ଳବ ଆଣିଛି ଓ ଦେଉଳିଆ ହୋଇପାଇଛି ।

ସ୍ୱାସ୍ଥ୍ୟକର ସ୍ଥାନକୁ ଯାଇ ସେ ଆଉଖଣ୍ଡେ ବହି ଲେଖିବ ବୋଲି ଭାବିଥିଲା । ସେଠିକୁ ଯିବାପାଇଁ ବାଟଖରଚ ଅଭାବ ପଡ଼ି-ଅସିଥାଏ । କଟକ ବାକି ପାଇଁ ବୋଡ଼ିଂ ଛାଡ଼ି ପଦାକୁ ଯିବା ଅସମ୍ଭବ ହେଉଥାଏ । ବୋଡ଼ିଂ ଭିତରେ ରହି ମେସ୍‌ରେ ଖାଇବା ପ୍ରାୟ

ଅସମ୍ଭବ ହୋଇ ଆସିଥାଏ । ସେ କଏଦୀ ପରି ମନେ କରୁଥାଏ କେମିତି ପଳାଇବ—ନିଜ ଚଉର ଲୁହାବାଡ଼ ଭାଙ୍ଗି ପକାଇବ ।

( ୧୦ )

ଶେଷକୁ ଦିନେ ଜଣେ ବନ୍ଧୁଙ୍କ ସାହାଯ୍ୟରୁ ଦାମୋଦର ହଷ୍ଟେଲ ଛାଡ଼ିପାରିଲା । ସେଦିନ ସକାଳେ ସେ ତାହାର ଗଳଦା ବନ୍ଧୁକୁ ଏକାଠି କରି ବୋଝକରି ନେଲାବେଳେ ତାହାର ଆଖିରେ ଲୁହ— ସମୟ, ଶକ୍ତି ଓ ଅର୍ଥ ଦେଇ, ତା' ବଦଳରେ ସେତିକି ସେ ଅର୍ଜିଥିଲା ।

ତଥାପି ବନ୍ଧୁ ଗଦାଟିର ମୋହ ଛାଡ଼ିପାରିଲା ନାହିଁ । ସମସ୍ତଙ୍କର ହସ, ଥଟ୍ଟା, କଟୂକ୍ତି ଓ ବିଦ୍ରୂପ ଭିତରେ ତାହାର ସାଧନା, ତାହାର ପଢ଼ା ଓ ଭବିଷ୍ୟତ ସମସ୍ତଙ୍କୁ ବିଦାୟ ଦେଇ ଚାଲିଲାବେଳେ ସେ ଥରକୁ ଥର ଭାବୁଥିଲା, 'କଣିକର ମୋହ ହେଉଛି ତାହାର ଦୁର୍ନିବାର ଆକାଂକ୍ଷା ଓ ଖିଆଲ ।

ଛୋଟିଏ ଖିଆଲ ତାହାର ଜୀବନକୁ ଧ୍ୱଂସ କରି ଦେଇଗଲା । ତାହାର ଜୀବନରେ କି ବ୍ୟାଘାତ ନ ଆଣିଲା !

( ୧୧ )

ଅଙ୍କ ଶିଖିପାରିଲା ନାହିଁ । ଶେଷଦିନକୁ ଅଧା ପାଗଳ ବୋଲି ନାଁ ପାଇଲା । ଭାଇଙ୍କୁ ଖୋଜି ଖୋଜି ଛୋଟିଆ ଗୋଟିଏ ଗାଁରେ ତାହାର ଗୁଜୁରାଣ ମେଣ୍ଟାଇଲା । ସେ ଅଙ୍କ ଶିଖିବାକୁ ମନକରେ ନାହିଁ, କି ତାହାର ଲେଖା ପଢ଼େ ନାହିଁ ।

ବର୍ଷ ପରେ ବର୍ଷ ତାହାର ଦେହ ଓ ମନ ଉପରେ ଦାଗ ଦେଇ ଚାଲିଯାଏ । କିନ୍ତୁ ପ୍ରଥମ ଆଘାତର ପୋଡ଼ାଦାଗ ପ୍ରତିବର୍ଷ

ଅଜ୍ର ଅଜସ୍ର ଜଳଜଳ ଦିଶେ । ସେ ମନେ ମନେ କହେ ‘ସଂସାରରେ ବଡ଼ ହେଉଛି ଧନ—ତାହାପରେ ମନ ଓ ମନର ଇଚ୍ଛା । କାରଣ ଦେହ ଉପରେ ମନ ବଡ଼ ଓ ମନ ଉପରେ ହେଉଛି ସଂସାର ।’

---

# ପାଞ୍ଚ

ଜ୍ୟେଷ୍ଠ-ମାସିଆ ଧୂମାଳ ଅଗରେ ବଟିଗୃହ ସଜ୍ଜନବନ୍ତା ଗଛ ଗୋଟିଏ ପରେ ଗୋଟିଏ ହୋଇ ଶୋଇଯାଏ ମାଟିରେ ।

ସଂସାରର ଘୋରଣା ଭିତରେ କେତେ ମଣିଷ ସେମିତି ଅକାରଣରେ, ଅସମୟରେ, ଅକାଳରେ ପେଷି ହୋଇଯାଉଛନ୍ତି । ସେହି ଖବର ସାରା ଦୁନିଆ ରଖେ ନାହିଁ, ଯେ କେତେଜଣ ମଧ୍ୟ ରଖନ୍ତି, ଯାହାଙ୍କ ଅଗରେ ଏହିସବୁ ଘଟିଯାଏ, ସେମାନେ ସବୁଦିନକୁ ମଧ୍ୟ ରଖନ୍ତି ନାହିଁ ।

ମଲ୍ଲିପୁର ଗାଁ'ର ପାଞ୍ଚଜଣ ଗାଉଁଲି ଭଦ୍ରଲୋକଙ୍କ ଭିତରେ ଜଣେ ମୁଖିଆ ଲୋକ—ନଟବର—କି ଅବସ୍ଥାରେ ପଡ଼ି ଦୁଇ ବରଷ ଜେଲ ଯାଇଥିଲେ ତାହାର ପ୍ରକୃତ କାରଣ ଓ ବିସ୍ତୃତ ବିବରଣ, ମାମଲା ଲଢ଼ିଥିବା ଓକିଲ, ମାମଲା ଫଇସଲା କରିଥିବା ହାକିମ, ତାହାଙ୍କୁ ଦୋଷୀ ପ୍ରମାଣ କରିଥିବା ସାକ୍ଷୀମାନେ କେହି ଭଲକରି ବୁଝିନ ଥିଲେ ।

ନିଜେ ବି ନିଟବର କମ୍ ବୁଝୁଁ ଥିଲା । ତାହା ପରି—ତାହାକୁ ପୋଷିବା ପାଇଁ ବା ପେଷିବା ପାଇଁ ସେ ଏ ଅବସ୍ଥାକୁ ଚାଲି ଆସିଥିଲା ।

ଦୁଇ ବରଷ ପରେ ସେ ଜେଲ୍‌ଖାନାର ମଝା କଟେଇ ଗୃହଗଣ୍ଡେ ଲମ୍ବା ଦାଢ଼ି ମୁହଁରେ ରଙ୍ଗି ଜେଲ୍ ଫାଟକ ପାରହୋଇ ଆସିଲା । କିନ୍ତୁ ତାହାକୁ ଆଦର କରି ପୁଣି ଥରେ ତାହାର ମଲ୍ଲିପୁର ଘରକୁ ଡାକିନେବାପାଇଁ ଜଣେ ବି କେହି ଆସି ନ ଥିଲେ ।

ଦୁଇ ବରଷ ଭିତରେ ତାହାର ପଡ଼ୋଶୀ କଏଦୀ, ଜେଲ-ଖାନାର ଜଗା ପାହେରୀ, ଡେଙ୍ଗା ଓ୍ୱାଡ଼ର୍, ଲୁହା କବାଟ, କଳର କମ୍ବଳ—ସବୁ ପ୍ରତି ଗୋଟାଏ ମମତା ଆସିଯାଇଥିଲା ।

ସେହିସବୁଠାରୁ ମେଲଣି ନେଇ ସେ ଆସିଥିଲା ପଦାକୁ— ଦେଖିବ ବୋଲି ତାହାର ପ୍ରିୟ ଓ ପରିଚିତମାନଙ୍କୁ ।

ସେ ଆସି ଦେଖିଲା ଯେଉଁମାନଙ୍କୁ ସେ ଭଲପାଏ ସେମାନେ ତାହାକୁ ଘୃଣା କରନ୍ତି । ଦୁଇବରଷର ଛାଡ଼ବାଡ଼ ତାହାର ମନରେ ସେମାନଙ୍କ ପ୍ରତି ସ୍ନେହ ଯେତିକି ଦୁଗୁଣର କରିଆଣିଛି, ସେମାନଙ୍କ ମନରେ ତାହାର ପ୍ରତି ଘୃଣା ମଧ୍ୟ ଠିକ୍ ସେମିତି ବଢ଼େଇ ଦେଇଛି ।

ଜେଲ୍‌ରୁ ବାହାରି କଙ୍କର ମାଲ୍‌ରାସ୍ତା ଉପରେ ଉଦ୍ଦେଶ୍ୟହୀନ ଆଖିରେ ଆଗପଛ ଦେଖି ଦେଖି ଚାଲିବେଳେ ସେ ତାହାର ଜୀବନ କଥା ଭାବୁଥିଲା—ତାହାର ଦେହର ଉପରେ ପଡ଼ିଯାଇଥିବା ବରଷ ବରଷର ଇତିହାସ, ଆଉ ଆଗକୁ ଧାଇଁଆସୁଥିବା ଦିନଗୁଡ଼ିକ ।

ଏହି ଘଣ୍ଟିସନ୍ଧିରେ ଜୀବନର ଦୋମୁହାଣି ଛକ ଉପରେ ସେ ଏକୁଟିଆ—ତାହାର କେହି ନାହିଁ ।

ବାବକୁ ଦୋଷ, ଦୁଃଖିତ ହୋଇ ସେ ଭାବିଲା—ସେମାନେ ପଛେ ତାହାକୁ ଭୁଲି ଯାଆନ୍ତୁ, ତାହାକୁ ଘୃଣା ଆଖିରେ ଦେଖନ୍ତୁ, ସେମାନଙ୍କ ଛଡ଼ା ତାହାର ଆଉ କେହି ନାହିଁ ।

ମଲ୍ଲିପୁର ଗାଁକୁ ଫେରିବା ପାଇଁ ନଟବର ଠିକ୍ କଲା । ସେ ଜେଲ ପାଇଁ ଯେଉଁମାନଙ୍କଠାରୁ ଛୁଣ୍ଡି ପାଇଥିଲା ପୁଣି ସେହିମାନଙ୍କ-ଠାରେ କ୍ଷମା ମାଗିବ । ନ୍ୟୂନ ହୋଇ ଲଇଁସାଇଁ ସେହି ଗାଁକୁ ପୁଣି ଫେରିଯିବ ।

ଏହି ପାକଳ ବୟସରେ ସେମାନଙ୍କୁ ଛାଡ଼ି ସେ ରହିପାରିବ ନାହିଁ ।

ଏହି କାରଣରୁ ନଟବର ଘରଆଡ଼କୁ ଚାହିଁଲା । ମଠର ଭଡ଼ା ଆଉ ରେଳ ଭଡ଼ା ଠିକ୍ କଲେ ସେ ଫେରିଯିବ ।

ସାହସ ବାନ୍ଧି ଗାଣ୍ଠିଲା ନଟବର ଗୁହଆଡ଼େ ଯାହାକୁ ଦେଖିଲା ହାତ ପତେଇ ବୁଲିଲା—ପଇସା ହେଲେ ସେ ପୁଣି ମଲ୍ଲିପୁର ଦେଖିବ ।

ତାହାର ଦେହହାତର ବଳ, ମୁହଁର ତେଜ ତାହାର ସାଥିରେ ବାଦ ଦେଲା । ସେ ଗରିବ ହୋଇ ରହିଲା ।

ଜେଲ୍ ଭିତରୁ ବାହାରିଲାବେଳେ ଯେଉଁ ନିଃସ୍ୱ ଥିଲା ସେଥିରେ ତାହାର ପରିବର୍ତ୍ତନ ଆସିଲା ନାହିଁ ।

ଏତକ ଯାକ କ୍ଳାନ୍ତ ଦେହ ନେଇ, ଅବଶ ମନ ନେଇ ନଟବର ବୁଲେ । ଯାହା ପାଏ ସେତକ ତାହାର ଦିନର ଖିଅକୁ ନଅଣ୍ଟ ହୁଏ । ଜେଲ୍ ଭିତରେ ସେ ଅଫିମଖିଆ ଶିଖିଥିଲା । ସେଥିକ ରୋଜନା ପଇସା ଗୋଟାଏ ଦୁଇଟା ଖରଚ କରେ ।

ଜେଲ୍ ଭିତରେ ଅଇଁଠାପ୍ରିୟ କୁକୁର ପରି ରହିଲା ପରେ, ଫଡ଼ୋଣୀ ଅମଳୀର ଅଧରାମୁଣ୍ଡ ପୁଡ଼ ଅଣା ରଖି, ନଟବର ଅଫିମଖିଆ ଶିଖି ଆସିଥିଲା ।

ଆଜ ଭିକାରି ଜୀବନରେ ଦେଖିଲା ଯେ ଏହି ଅଫିମ ତାହାର କ୍ଳାନ୍ତି ଦୂର କରୁଛି, ମନରେ ଉତ୍ସାହ ଆଣିପାରୁଛି, ଭୋକ ଶୋଷ

ଦୂର କରନ୍ତି, ତାହାର ମନରୁ ଦୁଶ୍ଚିନ୍ତା ଠେଲି ବାହାର କରି-ଦେଇଛନ୍ତି ।

ନଟବର ଏମିତି ଚେତନା ଭକ୍ତଣ୍ଡ । ଧାନ ମଜୁରିଆ ଖଟି ସେ ଘଡ଼ିଦିନ ଭଳ ମାରିବାକୁ ଗୋଟିଏ ବେଉସା କରିନେଇ । ଅଜ ବେଳେ ବେଳେ କାନ୍ଥ କାନ୍ଥ ବସିଛି ରଙ୍ଗେ—ଗାଁକୁ ଫେରିଯିବା ପାଇଁ ବାଟବେଳ ।

ଭକ୍ତଣ୍ଡର ମଧ୍ୟ ସାଇଡ଼ବା ପାଇଁ ଇଚ୍ଛା ଥାଏ, ତାହାର ବି ଭଣ୍ଡାରଘର ଥାଏ ।

ଏମିତି ଦେଢ଼ମାସ କାଳ ଚେଷ୍ଟା କରିବା ପରେ ନଟବରର ଅବସ୍ଥାର ବିଶେଷ ଉନ୍ନତି ହୋଇ ନ ଥିଲା । ତାହାର ମନର କାମନା ପୂରଣ ହେବାର ସୂଚନା ମିଳୁ ନ ଥିଲା ।

ନଟବର ସବୁ ଭୁଲିଯାଏ—ଅଫିମ ଦୟାରୁ ।

ଶେଷରେ ଦିନକର ନଟବର ବାଧ୍ୟରେ ପଡ଼ିଲା । ଦିନଯାକ ବୁରୁଜ ତଳେ ଗଛଛାଇରେ ବସେ । ସଞ୍ଜବେଳେ ଟିକିଏ ଅଫିମ ଅଜ ମିଠାଇଟିଏ ଖାଇ ଜବକୁ ଦୂରକୁ ରଖିବାପାଇଁ ଚେଷ୍ଟା କରେ ।

ଦିନେ—ଦୁଇଦିନ—ତିନିଦିନ ।

ତାହାର ସାଇତା ମାଲ ସରିଆସିଲା । ଦେହ ଦିନକୁ ଦିନ ଖରାପ ହୋଇଆସିଲା । ସିଧା ଠିଆ ହୋଇପାରେ ନାହିଁ— ମୁଣ୍ଡ ବୁଲାଏ । ବାଡ଼ି ଧରି କଷ୍ଟରେ ଯିବାଆସିବା କରେ ।

ରାତିରେ ପେଚା ବୋବାଏ । ବାଦୁଡ଼ି ଫଡ଼ଫଡ଼ ହୋଇ ଗଛରେ ଓହଳି ପଡ଼ି ଡେଣା ଝାଡ଼େ ।

ନଟବରର ମନ ଥରିଯାଏ—ଦେହ ଶୀତେଇ ଉଠେ । ତାହାକୁ ଜଣାଯାଏ, ସେ ଏହି ଛାଟପୋଡ଼ି କୂଳ ବୁରୁଜ ଉପରେ ଗଛତଳେ ତାରିମାନଙ୍କୁ ଖୁଣ୍ଟି ଅଣ୍ଟି ବୁଲୁଛି ।

ସେହି ଖବର ତାହାର ମଲ୍ଲିପୁର ଗାଁ'ରେ ପହଞ୍ଚିବ ନାହିଁ ।

ସେ ନିଜେ ଯିବାପାଇଁ ଏତେ କଥା ଚିନ୍ତୁଥିଲା କିନ୍ତୁ ତାହାର ମଲା ଖବର ସେଠି ପହଞ୍ଚିବା ମଧ୍ୟ ଯେମିତି ଅସମ୍ଭବ ହୋଇ ଆସୁଥିଲା ।

ନଟବର ଦାଢ଼ିରେ ହାତ ମାରେ । ମୁଣ୍ଡରେ ହାତଦେଇ ବସେ, ମୁଣ୍ଡର ବଥା ଦୂର କରିବାପାଇଁ ।

ପାଖରୁ ଅଫିମ ସରିଲା—ପଇସା ସରିଲା ।

ଦେହର ବଳ କମିଆସେ । ତାହାର ମନରୁ ସାହସ ହଜିଯାଏ । ଏହି କେତୋଟି ଦିନରେ ସେ ଅସ୍ତ୍ରେ ଅସ୍ତ୍ରେ ସଢ଼ିଯାଇଛି—ସରିଯାଇଛି ।

ପହିଲି ବରଷାର କୁଅପଥର ପାଳଚୋ ଉପରେ ପଡ଼ି ଯେମିତି ନୁହେଁ ଚଞ୍ଚଳ, ନୁହେଁ ଧୀର, ପାଣି ହୋଇ ମିଳେଇଯାଏ ନଟବର ସେମିତି ମିଳେଇ ଝଡ଼ିଯିବ । ଜେଲଖାନାରୁ ଅସି ଦାଣ୍ଡ ଉପରେ ସେ ସେମିତି ଶୁଖିଯିବ ।

ତାହାର ବାପା ବୋଧ ତାହାର ଜନ୍ମ ସାଙ୍ଗରେ ଏହି ଭାଗ୍ୟ ଦେଇଥିଲେ ପରା—

ସେ ବସି ବସି କାନ୍ଦେ । ହାତଟିକୁ ପଦାକୁ କରି ଗୁହିଁଥାଏ ।

ପୁରୀଘାଟ ରାସ୍ତା ଉପରଦେଇ କଲେଜ ଅଡ଼କୁ ମୋହିଁଥିବା ପଢୁଆ ପିଲା, କଚେରୀ ଅଡ଼କୁ ଧାଉଁଥିବା ମହକିଲ, ଅରପାର ତୋଟା ଅଡ଼କୁ ଗୁଲିଥିବା ଗୋରୁ ସମସ୍ତେ ଦେଖନ୍ତି—ନଟବରର କଷ୍ଟ ଦୂର ହୁଏନାହିଁ—ପଇସା ମିଳେ ନାହିଁ ।

ମାଗି ମାଗି ତଣ୍ଟି ଶୁଖିଯାଏ—ତଣ୍ଟି ପଡ଼ିଯାଏ । କାନ୍ଦି କାନ୍ଦି ଆଖି ଶୁଖିଯାଇଛି ।

ତାହାର ରୂପରେଖ ଦାରିଦ୍ର୍ୟତାର ପ୍ରତିମୂର୍ତ୍ତି ପରି ଠିଆହୋଇ-ରହିଛି ।

ଭଗବାନଙ୍କ ରାଜ୍ୟରେ ସମସ୍ତଙ୍କୁ ଦାନା ମିଳେ, କନା ମିଳେ ।

ନଟବରର ଗାମୁଛାଟି ଚୋରି ହୋଇଥିଲା—ସେହି ଗଛ ତଳୁ । ଲୁଗାଟି ଛିଣ୍ଡି ଯାଇଛି । ତାହାକୁ ଅଧେ ଚିରି କୌପୂନି କରେ ଆଉ ଅଧକରେ ଗାଙ୍କେ ଦେହକୁ ।

ଦନଙ୍କର ଗଛତଳେ ଗଲାବେଳେ ସେଇଟି ହଜେଇଲା, ଜରର ଜାଉଲରେ ସେ କେଉଁଠି ଥୋଇଲା ଜାଣେ ନାହିଁ ।

କେବେ କେମିତି ସେ ପଇସା ଅଧଲା ଗୋଟାଏ ପାଏ । ସେତକରେ ସେ କିଛି କିଣି ପାରେ ନାହିଁ ।

କୁଅଡ଼େ ଯିବାପାଇଁ ତାହାର ବଳ ନ ଥିଲା । ଜଣକୁ ଦେଖି ସ୍ବର ପଇସାର ଅଫିମପାଇଁ ସେ ପଇସା ଦେଇଥିଲା—ସେହି ଦରଦ୍ରର ବନ୍ଧୁ ଅଉ ଭିକାରୀଟିକୁ ଅଉ ନଟବର ଦେଖିବାକୁ ପାଇନାହିଁ ।

ନଟବର ଗଳିରେ ପଡ଼ିରହେ । ରାସ୍ତା ପାଖରେ ବାବୁଘର ଅଇଁଠା କୁଢ଼େଇ ଦେଲେ, ସେ ଖାଏ ।

କୁକୁରଠାରୁ ହୀନ ହୋଇଛି । ତାହାର ଭୋକ ତାହାକୁ ଏମିତି ହୀନ କରି ଦେଇଛି ।

ଏମିତି ରାସ୍ତା ଧୂଳିରୁ ଗୋଟେଇ ଖାଇ ନଟବର ଦୁଇଦିନ ବଞ୍ଚିଲା । ରାତରେ କୁକୁର ସାପଙ୍କ ଭଳିରେ ଘୁଞ୍ଚି ଘୁଞ୍ଚି ଯାଇ ଗୋଟିଏ ପିଣ୍ଡାରେ ଶୋଇଯାଏ ।

ଆଜି ସକାଳୁ ବାବୁଘର ଚାକର ଦାଣ୍ଡରେ ଢୁଷୁଡ଼ି ଢୁଷୁଡ଼ି ଅସି ନାଗଅଇର ଲଟା ଗଛତଳେ ପଡ଼ିଥିଏ ।

ନଟବର ମରିଛି । ଏଥିରେ ସନ୍ଦେହ ନ ଥିଲା ।

ମରିବାର ଅଗଦିନ ଜଣେ ଲୋକ ଦେଖିଥିଲା—ସେପ ଖରେ ଥିବା ଜଣେ ବାବୁଙ୍କ ଘରର ଘରଣୀ ।

ଟବର ପ୍ରତି ସମୟ ସମୟରେ ଦୟା ଆସେ । ତାହାର ଉପଚାର ଆଉ ଯାହା ହେଉନା କାହିଁକି, ଘଣ୍ଟେକ ପଚରକେ ଲୋକେ ଦେଇ ଜାଆଁଇ ରଖିଛନ୍ତି—ଟବରକୁ ।

ତାହାର କଷ୍ଟକୁ ଅଳ୍ପର ଦୁଃଖମୟ, ହତାଶାମୟ ଓ କଣ୍ଟକିତ କରିବାପାଇଁ ବୋଧହୁଏ ।

ସେଦିନ ନଟବର ପ୍ରତି ଦୟା ହେଲା । ସେ ନିଜେ ଆସି ପଚାରିଲେ, 'କିରେ, ତୋର ଘର କେଉଁଠି ? କେତେଦିନ ହେଲା ଏମିତି ପଡ଼ିଛୁ ତୁ ?"

ନଟବର ଏକା ନିଶ୍ୱାସରେ କହିଗଲା 'ମା, ମୋ' ଘର ମଣ୍ଡିପୁର । ମୁଁ ଅଫିମ ଖାଏ । ଦେଢ଼ ମାସ ହେବ ଯାଉଛି । ଟିକିଏ ଅଫିମ ଖାଇଲେ ଦେହ ଭଲ ହୋଇଯିବ । ଆଜି ଦିନ କେଇଟାରେ ମୁଁ ଚାଲିଯାଇପାରିବ ।......'

'ମୁଁ ଥିଲିଲେଢ଼, ଭଲ ଜାତି, କେଳ୍ ପାଉଥିଲି ।......'

ତାହାର ଆଖିରେ ଲୁହ ଆସୁଥିଲା ଅଧିକ । ତାହାର କହୁଥିବା କଥାଠାରୁ ବଳି, ତାହାର ଅବୁଝା ମନର କୋହ ହେଉଥିଲା ଅଧିକ । ବାବୁଙ୍କର କୁହାକୁହି ହୁଅନ୍ତି—

'ମଣିଷର ଜୀବନ ଏଇଆ । ଏମିତି ଏତେ ଶହର କେତେଟା ହେଉଛନ୍ତି । ତାହାର ପିଲାପିଲି ଅଛନ୍ତି ।......ଆହା !'

ପରଦିନ ସେ ଅଫିମ ପଠାଇଲେ । ସେ ଖାଇ କେତେ ଆଶୀର୍ବାଦ କଲା—'ଭଗବାନ୍ ଟବରର ଯଦି ଆଶୀର୍ବାଦ ଥାଏ—ତାହାହେଲେ ..... ।'

କହିଲା 'ମା, ଟିକିଏ ଖାଇବାକୁ ଦିଅ—ମୁଁ ଖାଇପାରିବି ନାହିଁ । ଛାତିରେ ବଳ ନାହିଁ । ଛାତିମଣ୍ଡି, ଆଉ ଟିକିଏ ଖଟା—ଏତିକି ଯଦି ଦୟା କରିବ—କରନ୍ତୁ......।'

ସେଦିନ ସେ ପାଇଲା ।

ଫାସିକାଠ ଅସାମୀର ଶେଷ ଆଶା, ଶେଷ ମାଗୁଣି ଯେମିତି ଉପେକ୍ଷା କରାଯାଏ ନାହିଁ, ସେମିତି ସେ ଭଗବାନଙ୍କର ସୃଷ୍ଟିରୁ ମେଲଣି ହେବା ଆଗରୁ ତାହାର ଶେଷ କାମନା ପୂରନ୍ତୁ ।

ଟିକିଏ ଅଫିମ—ଖାଇବା ଦରବ ।

ଗୃହର ଆଣି ତାହାକୁ ପାଖରେ ଥିବା ମାଟି ଖପରାରେ ଢାଳିଦେଲା ।

ନଟବର କାକୁତି ସ୍ୱରରେ କହିଲା, 'ବାବୁ, ଟେକି ଖାଇପାରିବି ନାହିଁ । ମୋର ପାଟି ପାଖକୁ ଟିକିଏ ଧରିଦିଅ—ତୁମର ମଙ୍ଗଳ ହେବ ।'

ଆଉ ଗୃହଲଟି ଯେମିତି କୁକୁର ଘିଅ ଘରୁ କାଢ଼ିଲାବେଳେ ମୁହଁକୁ ଡରେ, ସେମିତି ଡରି ତାହାର ପାଟି ପାଖକୁ ସେହି ଖପରାଟି ଦେଖେଇଲା ।

ନଟବର ପିଇ ନିଶ୍ୱାସ ମାରି ବହିଲା । ବାବୁଘର ପିଲାଏ ଚିଅ ହୋଇଥାନ୍ତି—ସେ ଗୋଟିଏ ଚଡ଼ିଅଖାନାର ଜନ୍ତୁ ହୋଇଥାଏ ।

ତାହାର ଆଉ ଗୋଟିଏ ଆଶା—ଶେଷ ପ୍ରାର୍ଥନା ଖଣ୍ଡେ ପାନ—

ସେତକ ପାଇଲା । ସେହି ତାହାର ମରଣଶୀଳ ଦେହରେ ଶେଷ ଉପଭୋଗ—

ନଟବରର ଚିକିତ୍ସା କରାଇବା ପାଇଁ ତହିଁଅବଦନ ଚେଷ୍ଟା କରାହେବ । ତାହାକୁ ଶୁଣାଇ ଦିଆହେଲା—

ନଟବର ଭାବିଲା—ସେ ବଞ୍ଚିଯିବ ଆଉ ସହରର ଏହି ରାସ୍ତାକଡ଼ରେ ବସିଥିଲେ—ସେ ଭଲ ହୋଇଯିବ, ହୁଏତ ତାହାର ଗୋଟିଏ ଝିଙ୍କ କାଟିଯିବ ।

ତହିଁଆବଦନ—

ନଟବର ଉଠେନାହିଁ । ସେ ପାଟି ମେଲାକରି ଉପରକୁ ଚାହିଁଛି । ବାବୁଘର ଲୋକେ ଦେଖି ଖୁସି ହୋଇ ଚମ୍ବରନ୍ତି ହୁଅନ୍ତୁ—ବୋଧହୁଏ ଶୋଇଛି ।

ଘଣ୍ଟାଏ—ଦୁଇଘଣ୍ଟା, ନଟବର ସେମିତି ଶୋଇଥିଲା । ଅସମ୍ଭବ। ନଟବର ମରିଛି । ପାଖରେ ନଟବର ଅଙ୍ଗ ନାହିଁ ।

ତାହାର ଗୋଡ଼ ହାତ ଯେମିତି ଥିଲା ସେମିତି ରହିଛି କେଉଁଠି ଶିର ଟିକଏ ଫୁଲି ଉଠିଛି । ନଟବରର ଅଖି ମେଲା ରହିଛି କେତେ ଜମିଲେ, କାଜ ଦଳେ ଅଜ ଦଳେ କାଜ ଅସି ବେଡ଼ିଲାପରି

ସମସ୍ତେ ପଦେ ଲେଖାଏଁ କହନ୍ତି । କିଏ ସହାନୁଭୂତିରେ ପଦେ କହେ, କିଏ ଅଫିମଖିଆକୁ ପଦେ ସାର୍ଟିଫିକେଟ୍ ଦିଏ; ଭଗବାନ୍‌ଙ୍କଠାରୁ ଆରମ୍ଭ କରି ନଟବର ମଲା ପର୍ଯ୍ୟନ୍ତ ଯାହାକୁ ତାହାକୁ ପଦେ ଶୁଣେଇ ସେମାନେ ବିଦାୟ ହୁଅନ୍ତି ।

ଶେଷରେ ନଟବର ଶବ ବୁହାହେବ ମ୍ୟୁନିସିପାଲିଟି ଗାଡ଼ିରେ—ସେ ଯେମିତି ଅଛୁଅଁ ।

ଅଜ ଯଦି ସେ ବଡ଼ଲୋକ ହୋଇଥାନ୍ତା, ତାହାର ଶବକୁ ବାହେଇବା ପାଇଁ ହୁଏତ ଲୋକଙ୍କର ଠେଲାଠେଲି ଲାଗିଥାନ୍ତା ।

ତେବେ ଏହି ଦୁଃଖ ନଟବର ବୁଝିବ ନାହିଁ ।

ତାହାର ବନ୍ଧୁ, ପରିଜନ, ଗାଁ'ର ଘିଅଖିଆ ଭାଇ, କେହି ଜାଣିବେ ନାହିଁ—କେମିତି କି ଅବସ୍ଥାରେ ନଟବର ମଲା ।

କେତେଦିନ ପରେ ସେମାନେ ଶାସ୍ତ୍ର ମତରେ ହୁଏତ ଶୌଚ ହୋଇପଡ଼ିବେ ।

କିନ୍ତୁ ନଟବରର ସେଥିରେ ଯାଏଅସେ କଣ ?

ଅନ୍ଧାରକାଗ୍ରି କୁଟା ଯେମିତି ନଈରେ ଭାସିଯାଏ ଅଜ ପାଣିରେ ମିଶିଯାଏ, ସେମିତି ନଟବରର ଦେହ ମିଳେଇ ଯାଇଛି ।

ଅଡ଼୍‌ହାଡ଼ କେଉଁଖଣ୍ଡେ ହସ୍‌ପିଟାଲ୍‌ରେ ରହିଛି—ବାବୁମାନେ ଦେଖି ପାଠପଢ଼ି ଡାକ୍ତର ହେବେ ବୋଲି ।

# ଢାଲ୍

ଗଳ୍ପ ନୁହେଁ—

କଳ୍ପନାରୁ କାଢ଼ି, ମନରୁ ଗଢ଼ି, ଅଜାବୁଢ଼ା ତାହାର ପିଲ୍ଲ ନାତିମାନଙ୍କ ଆଗରେ ଯାହା କାଢ଼ିଦିଏ, ସେଇଆ ହେଉଛି ଗପ ।

କନ୍ତୁ ଶତେକା ଜୀବନରେ ଯାହା ଘଟେ, ସଂସାରର ବଡ଼-ଦାଣ୍ଡରେ ଯେଉଁ ମଢ଼ ବୁହାବୁହିଏ, ଦାଣ୍ଡର ଧୂଳିରେ ଯେଉଁ ଭିକାରୀ ଗଡ଼ି ଗଡ଼ି ମରେ, ତାହାର ଦୁଃଖମୟ ଜୀବନର କରୁଣରସ ଗଳ୍ପ ନୁହେଁ ।

ଯେଉଁ ଦୁଃଖରେ ସରସତା ନ ଥାଏ, ଯେଉଁ କରୁଣ କାହାଣୀରେ ମନ ହସେ ନାହିଁ, ସେହି ପ୍ରକାର ଅଶାନ୍ତିଭରା ଜଞ୍ଜାଳ ଆସି ବହୁତ ବେଶି ଗରିବର ଜୀବନରେ ପହୁଞ୍ଚେ ।

ପାନଦୋକାନୀ ଶତ୍ରୁ ଓରଫ ଶତ୍ରୁଘ୍ନ ଜୀବନରେ ସେମିତି ହତାଶିଆ ଦୁଃଖ ଗୋଟିକ ପରେ ଗୋଟିଏ ଗୃଲି ଯାଉଥିଲା ।

ପୀଳମକୁରୀଆ ଘରେ ଜନ୍ମହୋଇ ସେ ଅଳ୍ପ ଭଦ୍ରଲୋକଙ୍କ ପରି ରାମ, ଲକ୍ଷ୍ମଣ, ଭରତ ପରି ନାଁ ପାଇଥିଲେ ବି ତାକ ନାଁ ଥିଲା— ଶତ୍ରୁଘ୍ନ ।

ଖାଲି ତାହାର ମା ତାହାକୁ ଯେତେବେଳେ ସାଇମାଇପଙ୍କ ଆଗରେ ମୁଣ୍ଡ ଉପରକୁ ଟେକି ଧରୁଥିଲା, ନଇଲେ ସାଇର ବାବୁମାନେ ଯେତେବେଳେ ତାହାଠାରୁ କିଛି କାମ ମାଗଣା କରେଇ ନେବାପାଇଁ ଗୃହୁଥିଲେ, ସେତିକିବେଳେ ତାହାର ନାଁ ଥିଲା—ଶତ୍ରୁଘ୍ନ ।

ସେଥିରେ କିଛି ଯାଏଆସେ ନାହିଁ । ସେ ସେତିକି 'ଶତ୍ରୁଘ୍ନ' ଡାକିଲେ ଜବାବ ଦିଏ । ସେଇ ବେଖାତିରିଆ 'ଶତ୍ରୁଘ୍ନ'କୁ ଠିକ୍‌ଏ କଅଁ ଳେଇ ଡାକିଲେ ସେ ଏଡ଼ିହୋଇଯାଏ ।

ସେ ବାଲିଦିନେ କାଠଯୋଡ଼ୀ ନଈରେ ଜାଲ ମାରେ, କାଠ ଧରେ, ଅଳ୍ପ ପାଣି ଶୁଖିଗଲେ ଦୋକାନ କରେ—ବାଡ଼ୋଇଙ୍କ ପିକ୍- ଅପିଦା ବାନ୍ଧେ ।

ଏଇ ଏତିକ ଜୀବିକା ଛାଡ଼ିଲେ ସେ ତାହାର ଘରକୁ ଆସେ ଦୁ'ଟା ଖାଇ ଟିକିଏ ବିଶ୍ରାମ ନେବାପାଇଁ । ବର୍ଷାରେ ଘର—ଅଳ୍ପ ପାଣ୍ଡେ ଗୃଳ—ସେଥିରେ ଶୋଷେଇ ହୁଏ ।

ଏଇ ହେଉଛି ଗରିବ ଶତ୍ରୁଘ୍ନର ଅତି ମାମୁଲି ଜୀବନ । ସେଥିରେ ନୂଆକଥା କିଛି ନ ଥାଏ ।

ସେ ନଈକୂଳରେ ଜହ୍ନରାତିରେ ବୁଲେ । ତାହାର ସାଙ୍ଗମାନଙ୍କୁ କହେ, 'ପାଗ ବଢ଼ିଆ ହୋଇଛି ।'

କେବେ ନଈବାଲି ଉପରେ ଟିକେ ଗାମୁଛା ପାରିହୋଇ ଶୋଇଯାଏ—କହେ, 'ଅଚ୍ଛା ପବନ ଗୃଲିଛି; ଗୋଟା ବି ଓଡ଼ଣ ଭି ମଶା ନାହିଁ ।'

ଠିକ୍ ସେହି ପାଖଦେଇ ବାବୁଘର ପିଲାଏ ବାବୁଙ୍କ ସାଙ୍ଗରେ ହାଉଆ ଖାଆନ୍ତି, ଜହ୍ନ ଅଲୁଅରେ ଖୁସିହୋଇ ଗୀତ ବୋଲନ୍ତି, ଭାବରେ ଉଚ୍ଛୁଳା ପଡ଼ନ୍ତି ।

ଶତ୍ରୁଘ୍ନ ଭାବେ, ତାର ମନର ଭାବନା ଆଉ ବାବୁର ଭାବନା ଏକା ।

କିନ୍ତୁ ପଖାଳ ଶାଗ, ଆଜ ଖେଉଛି ଝୀୟର ଯାହା କପାଳ ଠିକ୍ ସେହି ତଫାତ୍ ସେଠି ରହିଛି ।

× × × ×

ଅମର ଶତ୍ରୁଘ୍ନ —ତାହାର ଜୀବନରେ ନୂଆ ଘଟଣା ଗଢ଼ିଥିଲା; ଜୀବନକୁ ସେଥିରେ ଭରତି କରି ନିଜର ଜୀବନର ମଜା ଖୋଜୁଥିଲା ।

ସେ ଜୋଗାଇଥିଆ ଶିଖିଛି । ତାମର ଚ୍ଚାନ୍ତି ଦୂର କରିବାପାଇଁ ସେ ହେତକ ଶିଖିଛି ।

ତାର ଦୋକାନରେ ହେଥିପାଇଁ ସାଙ୍ଗ ଅଉ ଦୋସ୍ତ କରି ଅଷ୍ଟପ୍ରହରିଆ ବୈଠକ ଗୃଲେ ।

ତାହାର ବୁଦ୍ଧି ଅଗଲୁ ଟିକାଏ ମୋଟାଳିଆ ଥିଲା, ସେତକ ଅତୁର ଗୋଟାଳିଆ ଧରିଥିଲା ।

ଶତ୍ରୁଘ୍ନ ହସାଗୀ ହେଲା । ତାହାର ବାହାଘରେ ମେଳକ ଖୁଣ୍ଟାଖୁଣ୍ଟି ହୋଇନାହିଁ କି କନ୍ୟାର ରୂପରେଖ, ଦୋଷଗୁଣ ଖୋଜା ହୋଇନାହିଁ, କି ଅତିଥି ଅଭ୍ୟାଗତଙ୍କର ହେଲା ହୋଇ ନ ଥିଲା ।

ଶତ୍ରୁଘ୍ନ ଭାବେ—ତା ସ ଇର ବାବୁଙ୍କର ବାହା ଅଉ ଶତ୍ରୁଘ୍ନର ବୋହୂ ଅଣିବା ଭିତରେ ତଫାତ୍ କଣ ?

ସେମାନେ ଧନୀଲୋକ—ପାଞ୍ଚ ପଚିଶ ଖରଚ କରିଛନ୍ତି; ଅଉ ସେ ଗରିବ ପଇସାଟାଏ ଖରଚ କରିଛି । ସ୍ୱତନ୍ତ୍ର !

କିନ୍ତୁ ଅଡ଼େଇଫୁଟିଆ ବାମନ ଆଉ ପାଞ୍ଚହାତା ଷଣ୍ଡା ଯୁଆନ୍ ଭିତରେ ଯେଉଁ ତଫାତ୍, ସେଠି କଣ ସେଇଆ ନୁହେଁ ?

× × × ×

ଶତ୍ରୁଘର ପୁଅ ହୋଇଛି ।

ଶତ୍ରୁଘ ତାର ଏକୋଇଶିଆ ଦାନ ପୂଜା କରିଥିଲା । ତାହାର ଗଞ୍ଜେଇ ଦୋସ୍ତମାନଙ୍କୁ ଡାକି, ସିନ୍ନିଥିମେଳା ଭୋଗ ଦେଇଥିଲା । ଆଉ ସମସ୍ତଙ୍କୁ ତାହାର ସେହି ବଖୁରିକ ଘର ଭିତରକୁ ଡାକିଆଣି ଦେଖେଇଥିଲା ତାହାର ପୁଅଟିକୁ ।

ସେ ରଜାପୁଅ ପରି ହୋଇଛି ।

ତାହାର ସାମର୍ଥ୍ୟ ଭିତରେ ସେ ତାହାକୁ ଦୁଧଠାରୁ ଆରମ୍ଭ କରି ପାଉଡ଼ର ପର୍ଯ୍ୟନ୍ତ ସବୁ ଆଣି ତାହାର ହ୍ୱପାଳନ କରୁଥିଲା । ଗରିବଘରେ ପାଉଡ଼ର ଦିଅନ୍ତୁଏ—ସେ ନିଜେ ପାଉଡ଼ର ଖାଇ ତାହାର ମାଆ ହାତରେ ବଢ଼ିଛି, ଆଉ ବାବୁଘରପିଲା ଦୁଧ ପିଏ ।

ଶତ୍ରୁଘର ପିଲାଦିନରୁ ପିଲାକଥା । ତା ଦୋକାନରୁ ସଉଦା ନ କଲେ ସେ ମନ କଷ୍ଟକରେ । ସଉଦା କିଣିଗଲେ ସେ ବସି ଶୁଣାଏ ତାହାର ପୁଅକଥା, ସେ କେମିତି ସଫାରଙ୍ଗ ହୋଇଛି ଆଉ କେତେ ଟେକୁଛି, କେମିତି ହସୁଛି ଇତ୍ୟାଦି ଇତ୍ୟାଦି ।

ସେ ଭାବି ଭାବି ଭଲ ନାଆଁଟିଏ ତାହାକୁ ଦେଇଛି— କୁସୁନଆଁ ।

ବାବୁଙ୍କର ପୁଅ ନାଆଁ ମହେନ୍ଦ୍ରକୁମାର ହେବାରେ ଯାହା ବୁଝାଯାଏ, ଶତ୍ରୁଘର ପୁଅକୁ କୁସୁନଆଁ ନାଆଁ ଦିଆହେବାରେ ଠିକ୍ ସେଇଆ ବୋଲି କେହି କେହି କହନ୍ତି ।

ବୋଧହୁଏ ନୁହେଁ—କଳା ଚମ ଆଉ ଧଳା ଚମ ଯେମିତି ମଣିଷକୁ ସୁନ୍ଦର ଅସୁନ୍ଦର ଦୁଇଭାଗ କରିଦିଏ, ସେମିତି ଶିକ୍ଷା, ସଭ୍ୟତା

ଅଜ ସ୍ୱଚ୍ଛଳତା ମଣିଷ ଭିତରେ ସୌନ୍ଦର୍ଯ୍ୟବୋଧ କମ୍ ବେଶି କରିଦିଏ ।

× × × ×

ଶତ୍ରୁଘ୍ନର ପିଲା ହୋଇଛନ୍ତି । ସଉଦାଗର ହୋଇ ବଣିଜ କରୁଛନ୍ତି । ସଂସାରୀ ହୋଇ ବାପା ହୋଇଛନ୍ତି ।

ସେ ପ୍ରତ୍ୟେକଟିରେ ବାବୁ ମାନଙ୍କରେ ନିଜକୁ ସମାନ କରି ତୁଳାଉଛି, ହୋଇନାହିଁ ।

କାଠଯୋଡ଼ି ପଥରବନ୍ଧର ଗୋଟିଏ ପାଖରେ ପଙ୍କ ପାଣି ମ୍ୟୁନିସିପାଲିଟି ନାଳଦେଇ ଗଡ଼ିଯାଏ ଗଡ଼ିଅଛି, ଅଜ ଅରପାଖେ ନଈ ବହିଯାଏ ସମୁଦ୍ରକୁ ।

ଶତ୍ରୁଘ୍ନ କେବେହେଲେ ବାବୁ ହୋଇପାରିବ ନାହିଁ । ବାବୁ ହେବାପର୍ଯ୍ୟନ୍ତ ସେ ବାବୁ ପରି ସୁନ୍ଦରଭାବରେ ଭାବିପାରିବ ନାହିଁ, ଦେଖିପାରିବ ନାହିଁ, କି ବୁଝିପାରିବ ନାହିଁ ।

ତାହାର କୁସୁନିଅାଁ ଦେହ ଟେସ୍ପ ହେଲା, ଭଲ ହେଲା ନାହିଁ ।

ସେ ପୋକସୁଙ୍ଘା ରସ, ଓ.ଲମ୍ବ ଚେଉଁଲି, ଜାମୁ ଅର୍କ ଅଦ ଯେତେ ଟୁଣ୍ଡୁକା ଟୁଣ୍ଡୁକ ଅଜ ବଇଦର ଦବେଇ ସବୁ ଦେଲା, ତଥାପି ଭଲ ହେଲା ନାହିଁ ।

କୁସୁନିଅାଁ ଶୁଖି ଶୁଖି କଣ୍ଟା ହେଲା ।

ଶତ୍ରୁଘ୍ନ ବଡ଼ ଡାକ୍ତରକୁ ଅଣିଲା । ଡାକ୍ତରକୁ ଦୁଇ ଟଙ୍କା ଲାଞ୍ଚଦେଇ ସେ ସିଭିଲ୍ ସର୍ଜନ୍‌କୁ ଦଶ ଟଙ୍କା ଫିସ୍‌ରେ ଅଣି ପୁଅକୁ ଦେଖେଇଲା ।

ଶତ୍ରୁଘ୍ନ ଯେ ଅସହାୟ ଓ ନିଃସମ୍ବଳ ଏତିକି କଥା ଜଣେଇବ ବୋଲି ଅଜ ଡାକ୍ତରକୁ ବୁଝେଇବ ବୋଲି ସେ ଛୋଟ ଡାକ୍ତରକୁ ଦ'ଟଙ୍କା ଦେଇଥିଲା ।

ଶତ୍ରୁଘ୍ନ ବଡ଼ ଡାକ୍ତର ଅଗରେ ଢହାଳଠା କଲା—ତାହାର ପୁଅକୁ ଭଲ କରଦବାପାଇଁ । ତାହାର ଦୋକାନର ମୂଳଧନକୁ ସେଇଥିପାଇଁ ସେ ଫୋପାଡ଼ ଦେଇଥିଲା ଅଙ୍ଗି ବୁଜା ।

କୁସୁନଅଁ ମଲା । ଶତ୍ରୁଘ୍ନ ବହୁତ ଭେତରେ ସେକଥା ସତ ବୋଲି ବୁଝିଲା, କାନ୍ଦଲା ନାହିଁ ।

ଏକୁଟିଆ ତାହାକୁ ବୋହୁନେଇ ମଶାଣିରେ ପୋତଦେଇ ଆସିଲା—ତା ହଙ୍ଗରେ ତାହାର ଅଳ୍ପ କେତେଜଣ ସାଙ୍ଗ ଯାଇଥିଲେ ।

ମଶାଣିରେ ତାହାକୁ ଗାତରେ ପୋତ ମାଟି ଢାଙ୍କିଲାବେଳେ ସେ ଭାରି କାନ୍ଦଥିଲା । ତାହାର ସାଙ୍ଗମାନେ ତାହାକୁ ବୁଝେଇଥିଲେ, 'ଆରେ ଶତ୍ରୁଘ୍ନ ଭାଇ, କାନ୍ଦୁଛୁ କାହିଁକି ? କେତେ ପିଲା ହବ, ଦେଖିବୁ ନାହିଁ ! କଏ ନ ମରୁଛି ?'

ଗଞ୍ଜେଇ ମଳାହେଲା । ଶତ୍ରୁଘ୍ନ ବି ବେଶ୍ ତାଜା ହୋଇ ଫେରିଆସିଲା—ନଈରେ ଡୁବ ଦେଇ ।

ଘର ଅସନା ହୋଇଛି । କୁସୁନଅଁ ବୋଉ ବୋବାଳି ଛାଡୁଛି— ଅଜ ଶତ୍ରୁଘ୍ନ ବୋଉ ସେତେବେଳକୁ ଘର ଦୁଆର ଲିପାପୋଛାରେ ଲାଗିଗଲାଣି ।

ଶତ୍ରୁଘ୍ନ ଫେରି ଦୋକାନ ଖୋଲିଲା । କେତେ ଗରାକ ଅସି ଫେରି ଫେରି ଗଲେଣି ।

ସେହି ଗୋଟିଏ କଥା—ସବୁ ଗରାକଙ୍କୁ କହେ—'ବାବୁ, ପୁଅଟି ଚାଲିଗଲା ।' ଅଉ ତାହାର ଏକୋଇଶିଆ ଭୋଜି, ରଜା ପୁଅପରି ଚେହେରା, ସିଭିଲ୍ ସର୍ଜନ୍ ଫିସ୍—ସବୁକଥା ।

ତାହାର କହିବା କଥାରେ କୁସୁନଅଁର ମରଣଠାରୁ ବଳି ବେଶି ଥାଏ—ତାହାର ନିଜର ଅଶ୍ଚର୍ଯ୍ୟ । ବଡ଼ ଡାକ୍ତରର ଔଷଧ ଧରିଲା ନାହିଁ—ଡାହାଣୀ ଗ୍ରାସିଥିଲା ଓ ଅଉ—

ଆଗ ସାଥିଆଙ୍କ କଥାରେ ସୁଭଦ୍ରାପୁରକୁ ଭଲ ଗୁଣିଆ ଡକେଇଥିଲେ କେଜାଣି ଅବା ଠାକୁଥାଆନ୍ତା ।

ଆଜି ତାହାର ଦୋକାନର ମୂଳପାଣ୍ଠି ଝାଡ଼ଝୁଡ଼ ହେଲା । ତେବେ ବି ଝୋଙ୍କାଟା ରହିଲା ନାହିଁ ।

ଶତ୍ରୁଘ୍ନର ଆଖି ଓଦା ହୁଏ ନାହିଁ ।

ଆଜି ସେ ଗପେ ନାହିଁ—ଦିନ କେଇଟା ପରି ସେ ଥିଲା—ଗଲାଣି ।

ତାହାର ବାପା ମନରେ ପୁଅ ପ୍ରତି ସ୍ନେହ ଥିଲା । କିନ୍ତୁ ଏଣିକି ଜଞ୍ଜାଳର କୋଳାହଳରେ ସେସବୁର ମରମର ଶବ୍ଦ ଉଠେ ନାହିଁ ।

ଧଳାବାଲି ଉପରେ ଯେମିତି ଘାସ ଉଠେ ନାହିଁ, ସେମିତି ଦୁଃଖୀର ଗରିବ ଜୀବନର ନିରମାଣିଆ ଭାବନା ଭିତରେ ସୁଖ ଶାନ୍ତି, ଆଶା ଆକାଂକ୍ଷା, ଦୟା, କୃପା, ସ୍ନେହର ମଞ୍ଜି ବୁଣିହୋଇ ରହିଥିଲେ ବି ସେ ଉଠେ ନାହିଁ କି ଉଧାଏ ନାହିଁ ।

---

# ଦୁଇପାଖ

ଏହା ମୋର ଘରର ଆଗେ ଦେଖିବା କଥା ।

ସେ ହେଉଛନ୍ତି ଜାତିରେ କେଉଟ । ତାହାର ରଙ୍ଗ ପୋଡ଼ାକାଠ । ମୁଣ୍ଡ ବାଳ ଡହୁଁ ବଳି କଳା । ଦାନ୍ତ ଦ'ପାଟି ପାନ ଖାଇ ବୋଳ ବସିଯାଇଛି । ଅଉ ମୁହଁକୁ ମନେଇ ସେମିତି ଦାନ୍ତଗୁଡ଼ିକ ଅଠପଣି କଳା ପଡ଼ି ଆସିଲାଣି । ସେ ହେଉଛନ୍ତି ବଳିଆ—ଭେଣ୍ଡା କେଉଟ ଟୋକା । ସେ ତାହାର ଜୀବନ ନେଇ ଚଳୁଛି ।

ସେ ପୋଖରୀରେ କାଳି ଅନ୍ଧାରରୁ ବୁଡ଼ି ବୁଡ଼ି ମାଛ ଧରେ । ନଈ ବଢ଼ିଥିଲାବେଳେ ନଈରେ ଡଙ୍ଗା ଚଳାଏ । ମାଛ ସାପଙ୍କ ଭିତରେ ସେ ତାରବାର ହୁଏ ସତ; କିନ୍ତୁ 'ତାହାର ବି ସେମାନଙ୍କୁ ଡର । ସେ ତାହାର ଜୀବନକୁ ମୋର ଭଳି ଭଲ ପାଏ । ସେ ସବୁ ଦୁଃଖ କଷ୍ଟ ସହି ସହି ଚଳୁଛି । ସେ ଜୀବନମୂର୍ଚ୍ଛା କାମ କରେ, ତାହାର ପେଟ ପାଇଁ । କିନ୍ତୁ କେଉଁଦିନ ସେ ପେଟ ପୋଷିବାପାଇଁ କୁମ୍ଭୀର ପେଟ

ଭିତରକୁ ଯିବାପାଇଁ ମନ କରନାହିଁ କି ସାପର ଫଣା ଉପରେ ପାଦ ଥୋଇବା ପାଇଁ ଚେଷ୍ଟା କରନାହିଁ ।

ସେ ମୋର ପିଲାଦିନର ସାଙ୍ଗ । ଏକାଠି ଆମର ଘର; ଆମ ପିଣ୍ଡା ଗୁହାଳୀରେ ପଢୁଥିଲୁ । ସେ ପଣିକିଆ ଭଲ ଜାଣିଥିଲା । ମତେ ନ ଆସିଲାବେଳେ ସେ ବତେଇ ଦିଏ । ଆଜି ଅଛି ବଳିଆ କେଉଟ ହୋଇ ନଈରେ କାଠ ମାରି ଶିଖିଛି । ଠିକ୍ ସେଇଠି ମୁଁ ପାଠଶାଠ ପଢ଼ି ବାବୁ ପାଲଟି ଯାଇଛି । ମତେ ସେ ଡାକେ 'ବାବୁ' ବୋଲି । ମୋର ସେଥିକି ଦୁଃଖ ନାହିଁ । କେବେ ସେ ମୋର ସାଙ୍ଗରେ ପଢୁଥିଲା, ସେଥିକି ମୋର ଆଖି ଯାଏ ନାହିଁ । ମୁଁ ଭାବେ ଯେ ବଳିଆ ହୋଇଛି କେଉଟ—ତାହାର ଜନ୍ମ ସେଇଥି, ଆଉ ମୋର ଜନ୍ମ ବାବୁର ଜନ୍ମ । ଆମର ଜନ୍ମ ସାଙ୍ଗେ ସାଙ୍ଗେ ଷଠି ଠାକୁରାଣୀ ସେହି ଅଲଗା ଅଲଗା ମୋହର ମାରି ଆମକୁ ପଠାଇ ଦେଇଛି ।

ବଳିଆ ମୂର୍ଖ । ସେ ଆମର ଘର ପାଠୁଆଙ୍କ ଆଖିରେ ଗଣ୍ଡମୂର୍ଖ । ମୁଁ ବାହା ହେଲିଣି, ମୋର ବାହା ସାଥିରେ ତାହାର ମଧ୍ୟ ବାହାଘର ହୋଇଥିଲା । ସେ ତାହାର ଛୋଟିଆ ବାହାଘର କଲା—ମୋତେ ସେଥିକି ଡାକି ନାହିଁ । ମୁଁ ମୋର ବାହାଘରକୁ ତାହାକୁ ଖାଇବାକୁ ଡାକିଥିଲି । ସେ ଆସି ଭଲେ ପତର ପକାଇ ତାହାର ବାବୁର ବାହାଘର ଭୋଜିଭାତ ଖାଇ ଯାଇଛି । କେବେ ମୋ ସାଙ୍ଗରେ ପଢୁଥିଲା, ସେକଥା ବୋଧହୁଏ ସେ ସୁମରି ନାହିଁ । ମୁଁ ତାହାକୁ ମୁଠାଏ ଭାତ ଦେଇଥିଲି, ସେଥିରେ ସେ କୃତ୍ୟକୃତ୍ୟ । ଆଉ ମୋତେ ସେ ଡାକିନାହିଁ । ମୁଁ ସେଥିରେ ଖୁସି । ମୋର ସାଙ୍ଗରେ ସେ କେବେ ପାଠ ପଢୁଥିଲା, ଏ କଥା ମୁଁ ଭୁଲିଗଲିଣି ।

ମୁଁ ବାହା ହୋଇଛି । ସୁନ୍ଦର ସ୍ତ୍ରୀ; ପାଠୋଇ ଝିଅ । ଭଲ କୁଳର ଭଲ ଘରର । ସଙ୍ଗୁଣା ଶିଖିଛି, ଫେସନ ଜାଣିଛି, ଫାଇଲାମି ଜାଣେ;

ଅଜ୍ ଅଣ୍ଟି କାନ ମଧ୍ୟ ବେଲଭାଲ ଜାଣି ବାଟେଇ ଜାଣେ । ମୋର ସେଇଅ ବୋଝହୁଏ ମନର ଅର୍ଦ୍ଧଣ । ତାହାର ସାଙ୍ଗରେ ସେ ମେଳ ଖୋଇଥିଲା ।

ଅଜି ଅମେ ଗୃଲିଛୁଁ ଅମର ବାସ୍ତୁଘର ସ୍ନେହ-ଡୋର ଟାଣି ଟାଣି । ସ୍ତ୍ରୀର ରୂପ କେମିତି ନ ମଉଳିବ, ସେଥିପାଇଁ କେତେ ଦେ'ପାଜଉ କରେ । ତାହାର ଦେହ କାଳେ ଝାଉଁଳିଯିବ, ସେଥିପାଇଁ ପ୍ରତି ଗୃହ ମାସରେ ମୋଦକ ସାଲସା ତାହାକୁ ଖାଇବାକୁ ଦିଏ । ତାହାର ଦେହରେ ସୁନା ଗହଣା ଲଦି ଦେଇଛୁ । ତାହାର ସୁନ୍ଦରପଣିଅ ବଢ଼ିବ ବୋଲି ଭଲ ଲୁଗା ତାହାର ପାଇଁ କିଣି ଦେଇଛୁ । ହଁ—ସେ ଭଲ ଭାବରେ ଛଟି ଲେଖି ଜାଣିବ, ମନରୁ ଦୁଇଟା ଭଲ କଥା କହି-ପାରିବ ବୋଲି ତାହାର ପାଇଁ କେତେ ବହିପତ୍ର ମଧ୍ୟ କିଣି ଅଣେ ।

ସେହିସବୁ ସୁଖ ଅଜ ସ୍ୱାଚ୍ଛନ୍ଦ୍ୟ ଭିତରେ ମୁଁ ମାଳକୁ ଭଲ ପାଉଥିଲି । ମୋର ସ୍ତ୍ରୀ ନାଁ 'ମାଳ' । ସେ ମୋତେ ଭଲ ପାଉଥିଲା । ଅମେ ବୁଝୁଥିଲୁ, ଜଣେ ଜଣକୁ ଭଲ ପାଉ ।

ମାଳ ମୋର ସୁବିଧାକୁ ଦେଖେ । ମୋର ଦେହ କେମିତି ଭଲ ରହିବ, ସେଥିକି ଯତ୍ନ ନିଏ । ମୋତେ ଭଲରେ ରଖିବା ପାଇଁ ଚେଷ୍ଟା କରେ—ମୋର ଅର୍ଜନ ଭିତରେ ଅବଶ୍ୟ । ଅମେ ସେମିତି ସେମିତି ଗୃଲିଥିଲୁ । ଅମର ସୁଖକୁ କିଛି ସର ନୁହେଁ ।

ଅଜ ବଳିଅ ତାହାର ସ୍ତ୍ରୀ ସୁନେଇ । ବଳିଅ ମୁଣ୍ଡର ବାଳକୁ ବାସନା ତେଲ ଦେଇ କୁଣ୍ଡାଏ ନାହିଁ । ସୁନେଇ ସେମିତି ନୁଖୁରି ହୋଇଥାଏ । ତାହାର ମୁଣ୍ଡକୁ ବର୍ଷକୁ ବାରଥର ଟିକିଏ ଜଡ଼ା ତେଲ କି ଗସା ତେଲ ଯାଏ ନାହିଁ । ତାହାର ମୁଣ୍ଡଯାକ ଜଟୁଣି । ଅଜି ବଳିଅ ମୁଣ୍ଡଯାକ ଜଟି ।

ବଳିଆର ଅଣ୍ଟା ଓ ପିଠି ଯାକୁରେ ଷ୍ଟ୍ରଇ ହୋଇଛନ୍ତି । ସେ ଧନଯାକ ଖପର ଖପର ହେଉଥାଏ । ଓଦା ହେଇ ହେଇ ସେଥି ଯାକୁ ଅଧିକରୁ ଅଧିକ ଖରାପ ଦଶୁଛନ୍ତି । ମାଞ୍ଜିସ ମିଳେଇ ଯାଉଥିଲେ ଯେମିତି ଧଳା ଦଶେ, ଠିକ୍ ସେମିତି ।

ବଳିଆ ପେଟରେ—ସୁନେଇ ଭୋଗଣୀ ବାଢ଼ିଦଏ । ତାଙ୍କର ଘରେ ସେଥିରେ କଳି ଲାଗେ । ଭାତ ନ ଥାଏ ହାଣ୍ଡିରେ । ସୁନେଇ ଭାତ ପେଟ ଭାଦୁସି । ନିଜେ ଖାଇଯାଏ ବେଶୀ । ବଳିଆ କଳିକରେ । ବେଶୀ ବିରକ୍ତ ହେଲେ ସୁନେଇର ପିଠି ବେକକୁ ଧ'ଟା କରିଦଏ । ସୁନେଇ କାନ୍ଦ କାନ୍ଦ ଦଉଡ଼ି ଅସେ ଆମର ଘରକୁ । ମାଳ ତାହାକୁ ଫଟେଇ ଫଟେଇ ପଚ୍ଛରେ, କାହିଁକି ସେ ବାଡ଼େଇଲା—ବଳିଆଟା କେମିତି ଗେରସ୍ତଟାଏ ? ସୁନେଇ ତାହାର ଦଶପୁରୁଷକୁ ଲକ୍ଷଂଭର ଭଗେବଡ ଶୁଣାଏ । ମାଳ ହସେ—ମାଳ କହେ, 'ସେଗୁଡ଼ାକ ମଣିଷ ନୁହନ୍ତି । ତାଙ୍କ ଭିତରେ ମଣିଷପଣିଆ ନାହିଁ ।'

ମୁଁ ଭବେ ସେଇଆ ହୋଇଥିବ । ଭାଳେ କୋଠାଘରେ ଖାଲି ମଣିଷପଣିଆ ରହୁଥିବ, କିଏ ଜାଣେ ?

ମୋର ଯୋଡ଼ାଏ ପିଲା—ପୁଅଟିଏ ଝିଅଟିଏ । ଅଜ ବଳିଆର ପାଞ୍ଚୋଟି । ତାହାଙ୍କୁ ଭାତ ଅଣ୍ଟେ ନାହିଁ । ସେମାନେ ଓଳିଏ ଖାଆନ୍ତି—ଅର ଓଳି [illegible] ରହନ୍ତି । କେବେ ଅମର ଘର ଅଡ଼େ ଅସି ଅଇଁଠା ମୁଠାଏ ଖାଇଯାନ୍ତି । ସେଥି ପିଲାଗୁଡ଼ିକ ବେଡ଼େ ସୁନ୍ଦର ହୋଇଛନ୍ତି ବେଶ୍ ମୋଟାମୋଟି ।

ମୋର ଦୁଇଟି ପିଲା । ଏତେ ଔଷଧ ଖାଇ, ଏତେ ଯତ୍ନରେ ରହି ନଅଙ୍କିଆ ଦିଶନ୍ତି । ଅଉ କିଛି ନ ଖାଇ ସୁନେଇର ପିଲାଟିମାନେ ଏମିତି ବଡ଼ିଆ ହେଲେ କେମିତି ? ମୋର ସ୍ତ୍ରୀ ସହି ନ ପାରି କହେ, ଦେଖୁନାହିଁ—ସେଗୁଡ଼ାକ କେମିତି ହାଲୁପଡ଼ ହେଲେଣି । ଅଜ ଅମର

ପିଲମାନେ କଅଣ ହେଉଛନ୍ତି । ଦେହରେ ଟିକିଏ ବି ଲାଗିଲା ନାହିଁ ।

ଗହବର ଭାତ, ଅନ୍ଧାରିଆ କୁଡ଼ିଆ, ପାଣି କାଦୁଅ, ମଇଳା, ଛିଣ୍ଡା ଲୁଗାପଟା ସେମାନଙ୍କ ଦେହରେ ଯେଉଁ ବଳ ଦେଇଛି, ମୋର ଘରର ସବୁ ଘିଅଭାତ, ଅଣ୍ଡା, ପକ୍ୱାନ, ହାଲୁଆ ମିଶି ତାହାର ଭାଗକୁ ବି ହେଲାନାହିଁ ।

ମୋର ବଳିଆ ଉପରେ ହିଂସା ହୁଏ । ମାଳ ମୁନେଇ ଉପରେ ରହିଲେ ଖେଳେଇ ହୁଏ । ତାହାର ବଡ଼ପୁଅ ମାଛ ଧରି ଶିଖିଲାଣି । ଗୋଟିଏ ହାତରେ ଅହଲ ପେଲି ଜାଣିଲାଣି । ଆଜି ଆମର ବଡ଼ପୁଅ— ଦାନକୁଦାନ ରୋଗିଣା ଓ ଦୁର୍ବଳ ହୋଇଯାଉଛି ।

ଦିନକର—ମୋର ବାହାଘରର ତେରବର୍ଷ ପରେ, ଆଜି ମୋର ଗୃହାଳି ପାଠର ଛବିଶ ବର୍ଷ ପରେ । ବଳିଆକୁ ଡାକିଲି ପାଖକୁ । ଗୋଟିଏ ମସିଣାରେ ବସିଥିଲି । ତାହାକୁ ସେଥିରେ ପାଖକରେ ବସିବାକୁ କହିଲି । ସେ ଶଙ୍କି ଶଙ୍କି ହେଲା ।

ତାହାର ଡର ଭାଙ୍ଗି କହିଲି, 'କିରେ ବଳିଆ, ଏକାଠି ପାଠ ପଢ଼ିଥିଲେ ଅବଧାନ ପାଖରେ । ମନେ ଅଛି ?' ସେ ଡର ଡର କହିଲା, 'ହଁ ବାବୁ, ସେତେବେଳେ ପିଲାଟିଏମାନେ ହୋଇଥିଲେ ।' ଆମ ବାଉରିଆ ଲୋକଙ୍କ ତାହାର ପୁଅଟିଏ ଛ' ବରଷର, ତାହାର ନାଁ ବାଉରିଆ । ବଳିଆ ବୁଝେ, ସେ କେତେଜଣ ଅଜି ମୁଁ ବାବୁ ପିଲା, ଏଥି ଭିତରେ ବାବୁ ହୋଇଛି ।

ତାହାରି କଥା ପଚାରିଲି 'କିରେ କମିତି ଲାଗୁଛି ପିଲାପିଲି, ପୁଅ ମାଇପ, ଘର ସଂସାର ସବୁ ?' ସେ ହସି ଉପରକୁ ହାତଯୋଡ଼ି କହିଲା, 'ଠାକୁରଙ୍କ ଖେଳା ବାବୁ—ଆମର ହାତରେ କଣ ଅଛି ? ଆମ ବାଉରିଆ ବୋଲି ଅଛିଟିଏ ଏକା । ତାହାର ପାଇଁ ମୋର କଷ୍ଟ

ଜଣା ହୋଇନାହିଁ ।···ପାଞ୍ଚୋଟି ପିଲ୍ଲା—ଅଉ ଶାଗ ଭାତ ମୁଠାଏ ଦେଉଛି । ତୋଡ଼ଏ ତିନିଠଙ୍କା ପୋତାଗାତରେ ରଖିଛି—ଭଲ-ମନ୍ଦ ପାଇଁ ।···'

ସେ କହୁ ଯାଉଥିଲା—ମୁଁ ଭାଙ୍ଗିଦେଇ ପଚାରିଲି, 'ତୋର ଅସୁବିଧା କିଛି ହୁଏ ?—କେଉଁଠି ?' ସେ ଭାବିଲା ଭାବିଲାପରି ହୋଇ କହିଲା, 'ନା—କିଛି ନାହିଁ—ସବୁ ଚଳିଯାଉଛି ତ !'

ଆଉ ମୁଁ ? ଜ୍ଞାନ ବିଜ୍ଞାନ ଭିତରେ ମୋର ସୁଖଠାରୁ ବଳି ଦୁଃଖ ଅଧିକ ହୋଇଥିଲା । ଯାହା ମୁଁ 'ମାଳ'ଠାରୁ ଆଶା କରୁଥିଲି ଅଉ ଦାବି କରୁଥିଲି, ତାହା ପାଉ ନ ଥିଲି । ସେ ବି ମନେ ମନେ ଲଜ୍ଜିତ ହୋଇ ଆସୁଥିଲା, କିନ୍ତୁ ମୁହଁ ଖୋଲି କହେ ନାହିଁ—ସେ ତାହାର ଦୁଃଖୀ ବହୁତ ହେଲାଣି ବୋଲି କହେ । ମୁଁ ବି ସେମିତି ଭାବ କଷ୍ଟରେ ଥାଏ ବୋଲି ମନେ କରେଁ । ଏକାଠି ମିଶି ତାହାହେଲେ, କ'ଣ ଅମେ ସୁଖୀ ?

ସେଇଠି **ବଳିଅ**—ସେ କିଛି ନ ଜାଣି, ଏହି ଦେହ, ଏହି ମନରେ କେମିତି ସୁଖ ପାଉଥିଲା, କିଏ ଜାଣେ ? ତାହାର ସୁଖ ଆଗରେ ହୀରା ଧନ ଦଉଲତ କିଛି ନୁହେଁ । ସେ ସୁନେଇକୁ ଛୁଅଁନ୍ତେ ଭଲ ପାଉଥିଲା ବୋଲି କହେ ତ । ତାହାର ଫଳରେ ତାଙ୍କର ପିଲା । ତାଙ୍କର ପ୍ରେମର ପୁରସ୍କାର ।

କିନ୍ତୁ ସେହି ପ୍ରେମ କଣ ? **ବଳିଅ** ବୁଝେ ନାହିଁ—ସୁନେଇ ଜାଣେ ନାହିଁ । ତଥାପି ସେମାନେ ଖୁସିରେ ଥିଲେ ।

ଆଉ ଅମେ—ମୁଁ ଅଉ ମାଳ । ସବୁ କଥା ଜାଣି, ସବୁ କଥା ବୁଝି ସୁଖପାଇଁ ବାଉ ହୋଇ ଏମିତି ଅଶାନ୍ତିରେ ସଡ଼ି ମରୁଛୁ ନାହିଁକି ?

ଆମର ଏତେ ବୁଦ୍ଧି, ଆମକୁ ଟିକିଏ ଆନନ୍ଦ ଦେଇପାରୁ ନଥିଲା କ'ଣପାଇଁ ?

---

# ଧୂଳି

## ( ୧ )

ପ୍ରତିବର୍ଷ ବସନ୍ତ ଆସେ, କୋଇଲି ଗୀତ ଗାଏ, କାଠଯୋଡ଼ି ନଈରେ ମାଟି ପଡ଼ି ରାସ୍ତା ତିଆରି ହୁଏ, ପୃଥିବୀ ବୁଲିଆସେ ସୂର୍ଯ୍ୟ ବୁଦ୍ଧଅଙ୍କେ, ଅଙ୍କ ବଢ଼େ---ଆଉ ବର୍ଷେ ହୋଇଗଲା ।

ଗୋପାଳବାବୁଙ୍କ ଜୀବନରେ ସେମିତି ବର୍ଷଗୁଡ଼ିକ ଧୀର ଅଥଚ ଦ୍ରୁତଗତିରେ ତାଙ୍କର ଚିହ୍ନ ପଟୁଆର ଟାଣିନେଇ ଚାଲିଥାନ୍ତି । ସେଥିରୁ ଅଙ୍କସ୍ଥ ହୋଇ ଦେଢ଼କୋଡ଼ି ପାର ହୋଇ ଦୁଇକୋଡ଼ିକୁ ଚାଲିଲାଣି ।

କାଠଯୋଡ଼ି ନଈର ମାଟିରାସ୍ତା ବର୍ଷାଦିନର ବଢ଼ିପାଣିରେ ପୋଛି ହୋଇଗଲେ ବି ଜୀବନର ନିଅର ମାଡ଼ିଆସି ତାଙ୍କ ଉପରୁ ଛତିଶବର୍ଷର ଦାଗ ଉଠେଇ ନେଇ ପାରୁନ୍ତି, ଧୋବାଘରେ ଲୁଗା ଉପରୁ ମଇଳା ଦାଗ ଉଠିଗଲାପରି ।

ଗୃହିଁ ଗୃହିଁ ଅକ୍ଷିର ବଳ କମି ଆସିଲଣି—ସେ ଖୋଜେ ଦୁ'ଖଣ୍ଡ କାଚ । ଦେହର ବଳ କମି ଆସିଲଣି—ସେ ଖୋଜେ ଖଣ୍ଡେ ବାଡ଼ିର ଆଶ୍ରୟ । ଭିତରର ସ୍ନାୟୁ ଦୁର୍ବଳ ହୋଇଗଲଣି—ସେ ଖୋଜେ ଟିକିଏ ହୋଲ୍ତା । ମନ ସେମିତି ଖୋଜେ ମୃକ୍ତିଦାତାଙ୍କୁ—ଠାକୁର ମନେ ପଡ଼ନ୍ତି ।

ବୋଧହୁଏ ଅରପାରରୁ ଡାକରା ଆସିଲଣି । ଯାହା ଥିଲା, ସବୁ ଛୁଣ୍ଡିପାଉଛି ଗୋଟି ଗୋଟି ହୋଇ । ବନ୍ଧୁ, ବାନ୍ଧବ, ଶିଅଲଅଦ ଗୋଟିଏ ଗୋଟିଏ ହୋଇ ଭାଙ୍ଗି ଯାଉଛନ୍ତି, ନଇଲେ ଛୁଟି ଯାଉଛନ୍ତି । ଭଣ୍ଡାରୀ ବାଳ କାଟି କାଟି ସତେ ଯେମିତି ମୂଳଗୁଡ଼ାକ ଉଡ଼ାଇ ଦେଲଣି । ମୁଣ୍ଡ ଉପରେ ଅଧିକରେ ବାଳର ଘୋଡ଼ଣୀ—ଅଉ ଅଧିକରେ କିଛି ନାହିଁ ।

ତଥାପି ଗୋପାଳବାବୁ ଗୋଟିଏ ଲୋକ ପାଖରେ ପିଲା—ସେ ଗୋପାଳ ବୋଉ । ବୁଢ଼ୀର ଦେହରେ ଫଟା ଲଗାଇ ପଣତ ରହିଛି । ତଥାପି ସେତିକ ଗୋପାଳବାବୁଙ୍କୁ ସେଯାଏ ଶ୍ରେଷ୍ଠ ହୋଇନାହିଁ ।

ଅନେକ ଦିନ ତଳେ ଜୀବନକୁ ପାଣି ଛଡ଼େଇ ସେଇ ମାଁ ଗୋପାଳ ବାବୁଙ୍କୁ ଅନ୍ଧାରରୁ ଆଲୁଅକୁ ଆଣିଥିଲା । ବହୁଦିନ ଧରି ନିଜର ଦେହକୁ ଖାତିର ନ କରି ଗୋପାଳ ବାବୁଙ୍କୁ ଏହି ନିଷ୍ଠୁର ସଂସାର ପାଇଁ ତିଆରି କରିଛି । ଗୋପାଳ ବାବୁ ହଟି ଆସିଲେ ଥରକୁ ଥର ତାଙ୍କୁ କହୁଛି—ବାବୁରେ, ସଂସାରଟା ବଡ଼ ସଇତାନ୍ । ତାକୁ ଡରିଗଲେ ସେ ଭତେ ଡରେଇବ । ମାଡ଼ି ମକଚି ପଶିଯିବୁ । ତେବେ ସେ ବାଟ ଛାଡ଼ିଦବ । ତୁ ପାଞ୍ଚ ଜଣରେ ଜଣେ ହୋଇ ଗଣାହେବୁ ।

ମା' ବଞ୍ଚିଛନ୍ତି । ତାର ଅଶୀର୍ବାଦ ସେମିତ ଅସରନ୍ତି ବଢ଼ୁଛି । ଗୋପାଳ ବାବୁ ତାଙ୍କର ପିଲାଦିନର ଗୋପାଳଅରୁ ଉଠି ଗୋପାଳ ବାବୁ ହେଲେଣି ; କିନ୍ତୁ ସଂସାରରେ ପାଞ୍ଚଜଣରେ ଜଣେ ହୋଇ ଗଣାହେବା ଚେଷ୍ଟାରେ ଲାଗିଛନ୍ତି ।

( ୨ )

ପ୍ରତିବର୍ଷ ସେଦିନ ମା' ମନେପକେଇ ଦିଏ ଗୋପାଳ ବାବୁଙ୍କୁ ଯେ, ମା' ମରିନାହିଁ । ଗୋପାଳ ବାବୁଙ୍କର ଜନ୍ମଦିନ କରେ । ଯେଉଁଠିଅ ପିଲାବେଳେ, ଦୁଧଗାଲ ଭାଙ୍ଗି ନ ଥିଲାବେଳେ, ସେ ଯେମିତ ଚନ୍ଦନଟୀପା ନାଇ ହଳଦୀରେ ଅନୁକୂଳ ଭରିହୋଇଥିବା ଲୁଗାଖଣ୍ଡେ ପିନ୍ଧି ମା'ର ନିର୍ଦ୍ଦେଶ ଅନୁସାରେ ବଡ଼ବଡ଼ୁଆଙ୍କ ପାଖରେ ପଣତ ବେକରେ ଦେଇ ଦଣ୍ଡବତ ହେଉଥିଲେ, ବଡ଼ ହେଇଯାଇ ବି ଠିକ୍ ସେଇଅ କରି ଆସୁଛନ୍ତି । ମା'ର ଅଶୀର୍ବାଦ ଯେମିତ ଥିଲା ଦେଡକୋଡ଼ି ବର୍ଷ ତଳେ, ଠିକ୍ ସେମିତ ବଢ଼ୁଛି । କିନ୍ତୁ ତାଙ୍କର ଆଜି ସେ ଆନନ୍ଦ ଆସୁନାହିଁ ।

ଗୋପାଳ ବାବୁ ଗୁରୁଅଙ୍କେ ବାଧା ଗୋଇଠା ଖାଇ ଯନ୍ତ୍ରଣା ନେଇ ଧାଇଁ ଯାଆନ୍ତି ଘରକୁ । ପଦାରେ କହନ୍ତି ନାହିଁ ସେ କୁଆଡ଼େ ଯାଇ ତାଙ୍କର ଅଭାବର ଶଙ୍କାଗ୍ରା କରୁଛନ୍ତି । କିନ୍ତୁ ଘରେ ଯାଇ ମା' ଉପରେ ବହେ ତାନମାନ ହୋଇଯାଆନ୍ତି । ଗୁରୁଅଙ୍କୁ ରେଗା ହୋଇ ଶୁଝାନ୍ତି ସବୁ ମା' ଉପରେ ।

ମା' କହେ, ଗୋପାଳ ବଡ଼ ଶଢ଼ା—ଗୋପାଳ ବାବୁଙ୍କୁ କିଛି ପଗୁର ନା—ମୋତେ ତାଙ୍କୁ ବିରକ୍ତ କରନା । ଗୋପାଳ ବାବୁ ସେତେବେଳେ ମନେ ମନେ ହୋଇଯାନ୍ତି ଜଣେ ସବଳ ପରାକ୍ରମୀ ଲୋକ ।

ସାରା ସଂସାର ଗୋପାଳ ବାବୁଙ୍କ ପରାକ୍ରମକୁ ମାଡ଼ିଦେଇ ସାଧ ଛାଡ଼ିଗଲାବେଳେ ସେହି ସଂସାରର ଜଣେ ଲୋକ ଗୋପାଳ ମା— କେବେହେଲେ ତାଙ୍କର ସେହି ଅନ୍ଧବିଶ୍ୱାସ ଭାଙ୍ଗିନାହିଁ ।

ତାହାର ସେହି ପଦେ ଉପଦେଶ—ମାଣ୍ଡିମଛାଡ଼ ପଶିଗଲେ ଦଶ ଜଣରେ ଜଣେ ହେବୁ ।

( ୩ )

ବର୍ଷ ପରେ ବର୍ଷ ଗଡ଼ି ଚାଲିଛି । ଅଟେ କାଠଯୋଡ଼ ନଈରେ ଖରାଦିନେ ପାଣି ବହୁଥିଲା । ବର୍ଷାଦିନେ ନଈ ଭାର ଗହୀର ପର ଜଣାଯାଉଥିଲା । ଏବେ ଯେମିତି ବାଲି ପଡ଼ି ଗୁରଅଡ଼ ପୋତି ପକାଉଛି, ସେମିତି ଗୋପାଳ ବାବୁଙ୍କର ଜୀବନ ପୋତି ହୋଇ ପଡ଼ୁଛି ।

ସଂସାରରେ ଲୋକେ କହନ୍ତି, ଖାଲି ହସ ଆଉ ଆନନ୍ଦ କଥା— ଉତ୍ସାହ, ଉତ୍ତେଜନା, ଆଉ କାମ । ଲୋକମାନେ ଏଥିରୁ ପଛକୁ ପଡ଼ିଯାଆନ୍ତି, ତାଙ୍କୁ ଫୋପାଡ଼ି ଦିଆଯାଏ ଘୃଣାରେ । ଧକ୍କା ଟାଇ ଖାଇ ଉତ୍ତେଜନା, ଉତ୍ସାହ କମି ଆସିଲା ବୋଲି ସଂସାର ଯେତେବେଳେ ଗୋପାଳବାବୁଙ୍କୁ ଫିଙ୍ଗିଦିଏ, ସେ ପ୍ରତିବାଦ କରିବାକୁ ଇଚ୍ଛା କରନ୍ତି ନାହିଁ । ରାଗ ଆସେ ତାଙ୍କର ମା' ଉପରେ । ମା' ଯାହା କହୁଥିଲା, ହେଲା ନାହିଁ ।

ତାଙ୍କର ଆଖି ଆଗରେ ଅଟେ ଦେବଦାରୁ ଗଛ ବଢ଼ି ଚାଲିଛି ତାଙ୍କର ପାଚେରି ପାଖରେ । ଚଢ଼ୁଆ ନଡ଼ିଆଗଛ ପ୍ରତିବର୍ଷ ଡେଙ୍ଗା ହେଉଛି—ବିଜୁଳି ଖୁଣ୍ଟକୁ ଡେଇଁ ବହୁତ ଉଚ୍ଚକୁ ଉଠିଲାଣି । ସେ କିନ୍ତୁ ଠେଲପେଲ ହୋଇ ଡେଙ୍ଗା ହୋଇପାରୁ ନାହାନ୍ତି । ଏଣେ ମା' କହୁଛି—"ପୁଅ, ମାଟି କାମୁଡ଼ି ପଡ଼ିଥା', ଦିନେ ହେଲେ ଉଠିବୁ ।"

ଗୋପାଳ ବାବୁ ମନେ କରନ୍ତି, ହେଲା ଜୀବନରେ ଜଠିବା ଅସମ୍ଭବ ହେଲେ ବୋଧହୁଏ ତାଙ୍କର ମର୍ଶାଣିର ମଲ୍ଲଟାଡ ଉପରେ ଗଛ ଉଠିବ—ବରଗଛ ।

ଆଜ ହେବ ଭାରି ଝଙ୍କାଳିଆ ଓ ମୋଟା । କିନ୍ତୁ ସଂସାରର ମଣିଷଙ୍କ ଭିତରେ ସେ ରହିବେ ଦୁବଘାସ ପରି ।

ପଥରବନ୍ଧା ରାସ୍ତାର ପଥର ଫାଟରେ ଲୋକ ଦୁବଘାସ ଦେଖି ଦେଇନାଏ । ଘାସ ବଢୁଥିବ ଅଉ ପଥର ଡାଡିଯାଇ ବାହାର କରି ଦୋଉ ଯାଉଥିବ । କିନ୍ତୁ ଭିତରେ ଯେଉଁଭଳି ଶାଗୁଆ ଘାସ ରହୁଥିବ ସେଇତକ ଦେଖିବେ ଖାଲିଗଲା ଲୋକଙ୍କୁ ଆନନ୍ଦ ଦେବ । ସେମିତି ସେ କଷ୍ଟ ଭରା ଜୀବନର ରେପା ହୋଇ, ଛେଚି ହୋଇ, ଦରମରି ହୋଇ ରହିଥିବେ । ଲୋକେ ତାଙ୍କ ଉପରେ ଚାଲି ଏପାଖ ସେପାଖ ହେଉଥିବେ ବୋଲି ।

( ୪ )

ଅହରରେ ସୂର୍ଯ୍ୟ ବୁଡ଼ିଯିବେ । ଶରୀର ପ୍ରଖରତା କମ୍ ହୋଇ-ଆସିଲଣି । ଗୋପାଳ ବାବୁ ଯେତେ ବଡ଼ କ ଲୋଟ ହୋଇଯାଆନ୍ତୁ, ସେ ବି ଅସ୍ତ ଯିବେ—ଅକାଶର ଅଜଣା, ଅଶୁଣା, ଅଦେଖା ଜଙ୍ଗଲକୁ ଭରିଟି ମରିଗଲା ପରି ।

ତଥାପି ସେ ଯାଉଥିଲେ ବଜାରକୁ । ଦେଖି ଅସିବେ ଲୋକେ କେମିତି ବଡ଼ ଲୋଟ ହୋଇଛନ୍ତି । ଆଗରେ ଅଉ ପଛରେ ମଟର ଗାଡ଼ି ମାଡ଼ିଆସେ ମଣିଷ ଉପରକୁ । ମଣିଷ ଘୁଞ୍ଚିଗଲେ ତାଙ୍କ ଉପରକୁ ନାଳର କାଦୁଅ ଅଳିଆ କିଛି ଫୋପାଡ଼ି ଦେଇ ସେ ଚାଲିଯାଏ ।

ସେଠୁ ବାହାରି ଅସେ କୁକୁର—କାମୁଡ଼ିବା ପାଇଁ; ମଟର ତଳରେ ଲୁଚି ରହୁଥିଲାବେଳେ ସେ ମଣିଷ ଦେଖିଲେ, ଅଉ

ଗୋପାଳ ବାବୁଙ୍କ ପର ଲୋକଟିଏ ଗୁଲୁଥିବାର ଦେଖିଲେ, ତାହାର ଭୁକା କାମୁଡ଼ାର ପ୍ରଦର୍ଶନୀ ଖୋଲିବାକୁ ଧାଇଁଅସେ ।

ଆଗରୁ ପଛରୁ ସେମିତ ଗୋରୁ ଶିଙ୍ଗ ହଲାନ୍ତି, ନହଲେ ବାଟ ଛାଡ଼ନ୍ତି ନାହିଁ । ସେ ବି କହିଯାଆନ୍ତି, ମଟର ଆଉ ମଣିଷ ଭିତରେ ପ୍ରଭେଦ ରହୁଛି ।

ଘରକୁ ଫେରିଆସିଲାବେଳେ ଗୋପାଳ ବାବୁଙ୍କ ଆଖିରୁ ଅନେକ ଲିଭିଯାଇଥାଏ । କାରଣ ମଣିଷରେ ଗଣିତା ନେବାକୁ ବୋ.ଉ ପଠାଇଥିଲା ସଂସାରକୁ ଅନେକଦନ ତଳେ । ଏବେ ସଂସାରର ଧରଣ ବଦଳି ଯାଇଛି । ମଟର ଭିତରେ ଗଣିତା ନ ହୋଇ ପାରିଲେ ଜୀବନ ବୃଥା । କାରଣ କୁକୁର, ଗୋରୁ ବି ମାଡ଼ି ଅସୁଛନ୍ତି ମାରିଦବାକୁ—ନିପାତ କରିଦେବାକୁ ।

ଗୋପାଳକୁ ଏମିତ ବିଚଳିତ ଦେଖିଲେ ମା' ଅସି ପୁଅଗୀ ହୋଇପଡ଼େ—'ଗୋପାଳ, କ'ଣ ଭାବୁଛୁ ଏତେ ? ମୁଣ୍ଡ ଖରାପ ହୋଇଯିବ ।'

ଗୋପାଳ କେବେ କେବେ କହିଦଏ, 'ବୋଉ, ତୁ ମୂର୍ଖ ଲୋକ । ବୁଝିନାହୁଁ ଯେ, ସଂସାରରେ ମଟର ମଣିଷଠାରୁ ବଡ଼ ଆଉ ମୂଲ୍ୟବାନ୍ । ସବୁ ମଟର ପାଇଁ ଖୋରାକପୋଷାକ, ଜୀବନବୀମା ହୋଇଛି—ତୋ' ପାଇଁ ମୋ ପାଇଁ କିଛି ନାହିଁ । ଥିଲେ ଥିବ ନେହୁଁଏ ଅଇନ୍, ତା'କୁ ନେଇ ସମାଜ ଅଉ ଦେଶ ତଅର ହୋଇଛି । କ'ଣ ପାଇଁ ତାହାହେଲେ ଅମେ ବଞ୍ଚିବା ? ଅମ ଜୀବନର ମୂଲ୍ୟ କ'ଣ ?'

ଗୋପାଳର ମା ବୁଝାଏ । ସଂସାରରେ ବଡ଼ ସାନ ହୋଇ କିଛି ନାହିଁ । ସଂସାରକୁ ଡରିବୁ ନାହିଁ । ଭଗିରୂବ ସ୍ତ୍ରୀ ତଥର

କରିବୁ । ତୋ ଥାନ ଉପରେ କେହି ନିମନ୍ତ୍ରଣ କରି ଦେଇପିବେ ନାହିଁ ।

ଅଫିମାଙ୍କ ପରି ଅଫି ବନ୍ଧକରି ଗୋପାଳ ଭାବିଲା, ଅଧିନ ଭାରତରେ ଏହି ପ୍ରକାର ବିପ୍ଲବ କ'ଣ ସମ୍ଭବ ? ମଠରୁ ଠେଲିଦେଇ କ'ଣ ରାସ୍ତା ତିଆରି କରିହେବ ? ଯେ ଉଠିଗଲେ, ସେ ବି ଖଣ୍ଡେ ଖଣ୍ଡେ ମଠର ଆଣି ଥୋଇ ଦେଇଛନ୍ତି ସେହି ଜାଗାରେ ।'

( ୫ )

ମଣିଷର ପାଞ୍ଚ ତାହାର ଦେହକୁ ଓ ମନକୁ ପୋଡ଼ିଦିଏ । ସେଥିରେ ସବୁଥର ସଂସାରଟା ଓଲଟ ପାଲଟ ହୁଏ ନାହିଁ । ସଂସାର ତାହାର ଗଢ଼ିରହିଲେ ।

ଗୋପାଳବାବୁଙ୍କର ଜନ୍ମଦିନ ଆସିଲା । ପୃଥିବୀ ପୁଣି ବୁଲି ଆସିଛି ସୂର୍ଯ୍ୟ ଚାରିଆଡ଼େ । ମା'ର ଆଖି ଦିନକୁ ଦିନ କ୍ଳାନ୍ତ ଦିଶୁଛି । ଆଜି ଜନ୍ମଦିନରେ ମା' ହାତରେ କଳା ଲଗାଇ ଲୁଗା ନ ଆଣିବା କି ବହୁତ ଶୃଙ୍ଖଳକୁ ଫୋପାଡ଼ି ଦେବାକୁ ଗୋପାଳ ବାବୁଙ୍କର ଇଚ୍ଛା ହେଲ ନାହିଁ ।

ବୁଢ଼ୀ ମା' ତାହାର ବଳକା ଦିନ କେଇଟା ପୁଅକୁ ମନଇଚ୍ଛା ଆଶୀର୍ବାଦ ଦେଇଯାଉ । ମଣିଷର ଆଶୀର୍ବାଦରେ ଭଲ ନାହିଁ କି ମନ୍ଦ ନାହିଁ ।

ବୁଝିବସିଲେ କ'ଣ ସେ ମଣିଷରେ ଗଣିତା ହେଇ ନାହାନ୍ତି ? ମହାଜନ ଚଢ଼ିଗଲେଣି, କେତେବେଳେ ସିଗାରେଟ୍ ଖଣ୍ଡେ ଖାଇଲେ, କି ସିନେମା ଦେଖିଲେ, ସରକାରୀ ଲୋକେ ଟିକସ୍ ଆଦାୟ କରିବାକୁ ଚିହ୍ନ ବସିଛନ୍ତି । ସାଇକଲ ଖଣ୍ଡେ କିଣିଲେ ମୁନସିପାଲିଟି ଛକୁଛନ୍ତି ।

ଏଣେ ଆଖି ଦେଖୁଛି, ଆଉ କାନ ଶୁଣୁଛି । ବାଳିକା ସ୍କୁଲ ପ୍ରାଇଜକୁ କେଉଁ ମଠର ମାଲିକ, ଲୁଗା ଦୋକାନୀ ନିମନ୍ତ୍ରଣ ପାଇବ । ମୁନସିପାଲିଟି ମଠର ପାଇଁ କେମିତି ରାସ୍ତା ଚକଡ଼ା କରି ପାଣି ଛିଞ୍ଚୁଛି । ମଠରକୁ ହୁସିଆର କରିବାପାଇଁ ପୁଲିସ ଜଗିଛନ୍ତି ଛକେ ଛକେ ।

ସଂସାରରେ ଏମିତି ଦୁଇ ପ୍ରକାର ପଦାର୍ଥ ରହୁଛନ୍ତି—ଗୋପାଳବାବୁଙ୍କ ପରି ମଣିଷ ଆଉ ମଠର । ମଣିଷ ଦଏ ବେଶି, ନିଏ କମ୍ । ମଠର ନିଏ ବେଶି, ଦଏ କମ୍ । ମନ୍ଦ କଣ ? ମଠରର ଜନ୍ମଦିନ ହୁଏନାହିଁ, ତାହାହେଲେ ମଣିଷର ହେଉ ।

( ୨ )

ସଂକ୍ରାନ୍ତି ପ୍ରତିଦିନ କୁକୁର ଆସି ଜଣେଇ ଦେଇଯାଏ । ରାତିସାରା ଭୁକି ଭୁକି ଥକି ପଡ଼ିଥାଏ । ସକାଳେ ଖେଳିବ ବୋଲି ଆସି ମଶାଣି ପାଖରେ ଭୁକେ । ବାହାର ରାସ୍ତାରେ ରହୁନାହିଁ । ମଠର ଆଉ ମଣିଷର ପ୍ରଭେଦ ବୁଝିନାହିଁ—ଠିକଏ ଗାଉଁଲୀ ବହୁଯାଉଛି ! ସେ ସଂକ୍ରାନ୍ତି ଜଣେଇ ଦେଉଛନ୍ତି ।

ସେହି କୁକୁର ପାଖରେ ଗୋପାଳବାବୁ ଜଣେ ଧନୁର୍ଦ୍ଧର । ଆଉ ପୁଣି ନିଜ ମା' ପାଖରେ ଦିଗ୍ବିଜୟୀ ବୀର । ମା' ଆସି ତାଗିଦ୍ କରିଗଲେ ପୁଅକୁ—ପିଠା ଖାଇ ଯେମିତି ବୁଲିଯିବ ଗୋପାଳ ।

ଗୋପାଳ ଖଣ୍ଡିଏ ଦର୍ପଣ ଧରି ବସି ନିଜର ମୁଣ୍ଡକୁ ଖୋଜିଲେ, ଧଳାବାଳ କେଉଁଠି ଉପାଡ଼ିବା ପାଇଁ । ଏଗୁଡ଼ାକ ବି ଯନ୍ତ୍ର ଖୋଜିଲେଣି । ମା' ପଠେଇଥିଲେ କଳାବାଳ ଦେଇ ସଂସାରକୁ; ସଂସାର ସେତକ ଧଳା କରିବାକୁ ତିଆର ।

ଏଣେ ମା' ଭାଳୁଛି ପୁଅକୁ ଚେଷ୍ଟା କରି କରି—ମୋ ଗୋପାଳଟା ପିଲା । ତାହାର ଜନ୍ମଦିନ କରିବି । ବଡ଼ ହେଲେ ସେ ମଣିଷ ହେଇଯିବ । ତେଣେ ଗୋପାଳ ଭାଳୁଛି ତାହାର ଦେହକୁ

ସିଧା କରିବାକୁ । ବୟସର ବୋଝ ତାକୁ ବଙ୍କାଇ ଦେଇଛି ଭାଙ୍ଗିଦବା ପାଇଁ ।

ଗୃହଅଗ୍ନ କୁଡ଼େଇ ପଡ଼ିଥିବା ଦୈନ୍ୟ ଓ ଅଘାତ ଭିତରେ ବୋଝ ଗୋଟାଏ ପ୍ରହସନ ପରି ଲାଗେ । ତାହାର ପିଠାପଣା ଛଅର ଚାଲନ୍ତୁ । ଆଗ ସାମନା ସଡ଼କ ଦେଇ ମଟରର ଗର୍ଜନ ଅବିରାମ ଶୁଭୁଛି, ଯିବା ଆସିବାର ଶବ୍ଦ ।

ଖବର କାଗଜରେ ବାହାରିଛି ମଟର ଡ୍ରାଇଭରଙ୍କର ଯଶ ଗୋଟିଏ ବୁଢ଼ୀ ତାହାର ଛୁଆକୁ ନେଇ ଯାଉଥିଲା, ମଟର ଧକ୍କା ଦେଇ ମାରି ଥୁଆଇଛନ୍ତି, ଅଉ ପଳାଇଛନ୍ତି ଜୋରରେ, ପତ୍ତା ମିଳିଲା ନାହିଁ । ମନ୍ତ୍ରୀଙ୍କର ମଟର ମଣିଷ ମାରଛନ୍ତି ଯେ, ଦୋଷୀ ହୋଇ ପାରୁନାହିଁ କଟେସ୍ୱରେ ।

ମନୁଷ୍ୟଙ୍କର ଆଖି ମଟର ଉପରେ । ଘରଣୀମାନେ ସ୍ୱାମୀଙ୍କୁ କଳଗୁଣ ଦେଉଛନ୍ତି ମଟର ନାହିଁ ବୋଲି । ହାଲ ଫେସନ୍ ଯୁବତୀମାନେ ଖୋଜି ବୁଲୁଛନ୍ତି କାହା ଘରେ କେମିତିକା ମଟର ମିଳିବ ଟିକିଏ ବୁଲାବୁଲି କରିବାପାଇଁ ।

ଜୀବନରେ ଗୋପାଳର ମୂଲ୍ୟ ଭିତରେ ଏହା ଝଡ଼ ବୋହି-ଯାଉଥିଲା—ସେ କେହି ନୁହେଁ । ବି. ଏ. ପାସ୍ କରି ଓଡ଼ିଶାର ପ୍ରଥମ ହଜାରକରେ ନାଁ ଲେଖାଇଲା । ସାଇକଲ କିଣି ଓଡ଼ିଶାର ପ୍ରଥମ ଅଧ ଲକ୍ଷରେ ନାଁ ଲେଖାଇଲା । ତେବେ ବି ସେ କିଛି ନୁହେଁ, କାରଣ ସଂସାରର ମାପକାଠି ହେଲା ମଟରଗାଡ଼ି ।

କିନ୍ତୁ ମଟର ତାଡ଼ରେ କବି, ଦାର୍ଶନିକ, ଗୁଣିଲୋକ ଚଢ଼େ ନାହିଁ । ସେମାନଙ୍କ ଉପରେ ମଟର ଚାଲିଯାଏ ଓ ବୁଟେଇ ଦେଇଯାଏ ଯେ ମଟର ଆଗରେ ଏମାନେ କିଛି ନୁହନ୍ତି ।

( ୭ )

ଗୋପାଳବାବୁ ଠିକ୍ କରିନେଲେ, ମା'କୁ ସେଦିନ ବୁଝେଇ ଦେବେ ଯେ, ସେ ସଂସାରରେ କିଛି ନୁହନ୍ତି, ତାଙ୍କର ଅଙ୍କ ଜନ୍ମଦିନ ଦରକାର ନାହିଁ । କେବେ ସେ ଜନ୍ମ ହୋଇଥିଲେ,- ସେ କଥା ହିସାବ କଲେ ଲାଭ ନାହିଁ । ଆଉ କେତେଦିନ ସେ ଜୀଇଁବେ ସେତକ ଜାଣିଲେ ଲାଭ ଅଛି । ଚୂନାକୁ ରାନ୍ଧି ପିଠା ଉଆଁସ କରିଲେ କାମକୁ ଲାଗିବ ।

'ଅସିଲୁ ଗୋପାଳ, ଆ—ପୂଜା ମାରଟେଇ ଦିବୁ ।'

ଗୋପାଳ ବାବୁ ଗଲେ । ମା'ର ଶୁଖିଲା ମୁହଁରେ ଟିକିଏ ହସ ଲାଗି ଅଛି । ଲେଖକର ଅତି ନିକୃଷ୍ଟ ଲେଖା ବହି—ପଢ଼ିଲେ ଯେମିତି ହସ ଫୁଟିଉଠେ ଲେଖକ ମୁହଁରେ ।

ଗୋପାଳବାବୁ ଡାକିଲେ, 'ବୋଉ, ଆ, ଏକାଠି ଖାଇବା ଆଜି । କେବେ ତୁ ଖୁଆଇ ଦେଉଥିଲୁ; ଆଜି ମୁଁ ତତେ ଖୁଆଇ-ଦେବି । ଦିନେ ତୋର ସ୍ନେହ ମତେ ବଡ଼ କରୁଥିଲା । ସେତେବେଳେ ମୋର କିଛି ନ ଥିଲା । ଆଜି ମୋର ସ୍ନେହ ତୋର ଦରକାର ପଡ଼ିଲାଣି । ତୋ'ର ଆଜି କିଛି ନାହିଁ—ଶରି ଦରବା, ଶୁଖିଲା ମୁହଁ ଆଉ ଖାଲି ହାତ । ଆ—ବୋଉ—ଆ ।'

ଗୋପାଳ ବୋଉ [illegible]ହୋଇ ଚାହିଁଲା । ବାଇଆ ପୁଅକୁ । କଣ କହୁଛି ଏସବୁ ? ସଂସା[illegible] ଘର କା[illegible] ଲୋକ ଏମିତି କଥା କହେ ନାହିଁ । ସେ ସକାଳୁ ଉଠି କାମରେ ଲାଗେ । ଭୋକ ଲାଗିଲେ ଖାଏ । ଥକିଗଲେ ଶୋଇପଡ଼େ । ସେ କଣ ଏମିତି କଥା କହେ ? —ସ୍ୱାମୀ ବାପ ଏମିତି କଥା କେବେ ହେଲେ କହୁ ନ ଥିଲା ।

'ଗୋପାଳ, ମୋର ମୂର୍ଖ କଥା ଗୋଟିଏ ଅଛି । ମୋର କିଛି ଦରକାର ନାହିଁ । ମୋର ଗୋଟିଏ ପୁଅ ଅଛି—ଗୋପାଳିଆ । ସେହି ମୋର ସବୁ ।'

'ସତେ ବୋଉ ! ସବୁ ସିନା ଉତେ ମିଳିଲା । ମୋର ତ କିଛି ନାହିଁ, ସଂସାରରେ ମୋ ଥାନ ନାହିଁ । ତୁ ମତେ ଖୋଜୁଛୁ । ମୁଁ ଖୋଜୁଛି ଗଣ୍ଡେ ମଠର । ଉତେ ମିଳିଲା ତୋ' ଦାଦା । ମୋ' ପାଇଁ ମତେ ମିଳିଲା ନାହିଁ କିଛି ।'

'ଭୁଲ୍ କହୁଛି ଗୋପାଳ, ସଂସାରର ଗୋଇଠାକୁ ଓଲଟେଇ ପାରିଲେ ତୁ ସବୁ ଫେରି ପାଇବୁ । ତୋ'ର ପରି ଲୋକ ଶହ ଶହ, ହଜାର ହଜାର, ଲକ୍ଷ ଲକ୍ଷ ବାହାରିଲେ ସଂସାରର ରାସ୍ତା ବଦଳିଯିବ । ଯାହା ନ ପାଇଛୁ, ସେହି ତୋର ଧନ ହଜିଲା । ସେତିକ ଭଙ୍ଗିଲେ ସେଇଟୁ ସବୁ ପାଇବୁ ।'

# ଅପନ୍ତରାର ଫୁଲ

## ( ୧ )

କିଏ ଜାଣେ ପୃଥିବୀର କି ଉପକାର କରିବା ପାଇଁ ବିଦାଅ ଜନ୍ମ ହୋଇଥିଲା । ତାହାର ଜନ୍ମ ତାରିଖ କେହି ଜାଣେ ନାହିଁ—ନିଜେ ବିଦାଅ ବି ଜାଣେ ନାହିଁ । ନିଜର ଅନୁମାନରେ ସେ ତା' ବୟସ କହେ । ତାହାର ରୂପରୁ, ଅଙ୍ଗର ମୋଟ ପାତଳ ଦେଖି, ତାହାର ଚଳାପରିଚ ଲୋକେ ତାହାର ବୟସ ଠଉରାନ୍ତି ; ଚଳୁଥିବା ଦିନ-ଗୁଡ଼ିକରେ ତାହାର ଅପୂର୍ବ ବ୍ୟବହାର ଦେଖି, ତାହା ବିଷୟରେ ମୋଟାମୋଟି ଧାରଣା ଅଣନ୍ତି । କିନ୍ତୁ ବିଦାଅ କିଏ, କେଉଁଠୁ କେମିତି ଆସିଲା, ତାହାର ବିବରଣୀ କେହି ଜାଣେ ନାହିଁ ।

ଭଙ୍ଗା ଗୁହାଳଘର ବାଡ଼ିକୁ ଲାଗି ସେହି ଯେଉଁ ପାଟେରେ ଦିଅ କାଞ୍ଜିଆ ହାଉସ ଯେଠି ବନ୍ଧୀ ହେଉଥିବା ଅଠ ଦଶଟି ଗୋରୁଙ୍କୁ ଜଗିବାକୁ ବିଦାଅକୁ ଅମଦାନୀ କରା ହୋଇଥିଲା । ପ୍ରତ୍ୟେକ ପ୍ରକାରର

ଭାମ ପାଇଁ ଉପଯୁକ୍ତ ଲୋକ କେମିତି ଲୁଅଡ୍ ଅସି ମିଳିଯାନ୍ତି, ତାହାର ଉଦାହରଣ ସେଠି ଦେଖା ପଡୁଥିଲା ।

ନୂଆ କାମରେ ବାହାଲ ହୋଇ ଯେଉଁଦିନ ବଦଅ ଅସିଲା, ସେଦିନ ତାହାର ପୋଷାକ ଥିଲା ଗୋଟିଏ କୋଟ ଅଣ୍ଟୁଲ୍‌ଣ୍ଟୁ ଫାଲ୍‌ଟା, ଦେହରେ ଖଣ୍ଡେ ଛିଣ୍ଡା କଳା ଜାମା, ହାତରେ ଗୋଟିଏ ବାଡ଼ି । ଏସବୁର ମାଲିକ ସେ ନିଜେ—ତାହାର ସାତ ବରଷର ଅଗାଧୂଆ ଦେହ ମାପକାଠି ପରି ଫାଟିଥାଏ । ଗୋଡ଼ରେ ଗୋଟିଏ ଘା ହୋଇ ସେ ଅଣ୍ଟୁ ଟାଙ୍କି ଲେଙ୍ଗେଇ ଲେଙ୍ଗେଇ ଚାଲେ । ମୁଣ୍ଡଟାରେ ନେହୁ ବାଳ ଅସର, ଫୁଲା ଫୁଲା ହୋଇ ଢେଉଟି ଗଣ୍ଡାରେ ରହୁଥାନ୍ତି । ବଦଅର କଳା ଦାନ୍ତ ତାହାର ପୋଡ଼ା ଓଠରୁ ବାହାର ହୋଇ ଦଶେ । ବଦଅ ଗୁଲ୍ ଟାଏ ଅଉ ବଞ୍ଚିଥାଏ ।

ବଦଅ ଅସିବା ପରେ କାଞ୍ଜିହାଉସର ପ୍ରସାର ବଢ଼ିଲା । ଅନେକ ବୁଲା ଗୋରୁ ଧରାହୋଇ ଅସନ୍ତି । ଯାହାର ଗୁଲ୍‌ଖିଅର ଅଭାବ ଘଟେ, ସେ ଯାଇ ଗୋଟିଏ ଗୋରୁ ଧରିଅଣି ଛାଡ଼େ । ଅଉ ତାହାର ମାଲିକ ଜୋର ଜବରଦସ୍ତି ନ କଲେ କିଛି ବକ୍‌ସିସ୍ ଦେଇ ଗୋରୁକୁ ମୁକାଳି ନେଇଯାଏ । ବଦଅ ଅଉ ତାହାର ସାଙ୍ଗ-ମାନଙ୍କର ଭୋଜଟାଏ ହୁଏ, ଗୋରୁର ମାଲିକ ଖୁସିରେ ଚାଲିଯାଏ । ଅଉ ଗୁଲିର ପ୍ରମାଣ ହୁଏ, ସବୁବେଳେ କାଞ୍ଜିହାଉସ ପୂରି ରହେ—ମାଲିକର କିଛି ମଧ୍ୟ ଲାଭ ହୁଏ ।

ସମସ୍ତେ ବଦଅକୁ ଚିହ୍ନିଗଲେ । ସମସ୍ତଙ୍କର ଭଲ ମନ୍ଦ ପ୍ରତି ବଦଅ ନିଜର ଦୋଷ ଅଉ ଯେ ମନେକଲା, ସେ ପ୍ରିୟ ହୋଇ-ଉଠିଲେଣି, ଯେମିତି ସଭା ସମିତି କରି ରାଜନୀତିକ-ଭଣ୍ଡମାନେ ନିଜକୁ ଲୋକପ୍ରିୟ ବୋଲି କଳ୍ପନା କରିନେଇ ଥାଆନ୍ତି ।

ସେଇଠୁ ବଦଅର ଜୀବନର ଆରମ୍ଭ ।

( ୨ )

କ୍ଷେତରେ ଧାନ ହେଲେ ମୂଷାର ବି ମାଇପ ଯୋଗାଡ଼ୁଏ । ବଦଅଲିର ଖାତିର ଓ ପ୍ରସାର ବଢ଼ିବା ସାଙ୍ଗେ ସାଙ୍ଗେ ଭାଙ୍ଗିହାଜିମ୍ ଗୋଟିଏ ବଡ଼ ଗୁଲ୍ ଅଡ୍ଡା ହେଲା ।

ଏତେବଡ଼ ବ୍ୟବସାୟ ଚଳାଇବାପାଇଁ ବିଚକ୍ଷଣ ବଦଅଲି ଗୋଟିଏ ମାଇପ ଯୋଗାଡ଼ କରି ଆଣିଲା । ସେ ବି ଯେମିତି ସେହି ଲୋକଟିକୁ ଆଶା କରି କେଉଁଠି ବାଟ ଚାହିଁ ବସି ରହିଥିଲା ।

ସେ ଆସି ଗୁଲ୍‌ଖଟିର ଦେବୀ ପରି ହେଲା । ସେ କୁକୁଡ଼ା ପୋଷେ । ତାହାର ଅଣ୍ଡାରେ ସେ ଅଣ୍ଡା ଟୋଟିକେ ମଇଦା ଧୋଇ ଅଠଅଣାର ପିଠା ତିଆରି କରି, ଖଣ୍ଡ ଖଣ୍ଡ କରି ବିକେ, ସେହି ଅମଲୀମାନଙ୍କୁ ଗୁଲ୍ ସାଙ୍ଗରେ ଲଗେଇବା ପାଇଁ ।

ବଦଅଲିର ଆୟ ବଢ଼ିଲା । ତାହାର ସେହି ସାଙ୍ଗଠା ଭାର୍ଯ୍ୟାଟି ପ୍ରତି ମଧ୍ୟ ସ୍ନେହ ବଢ଼ିଲା ।

ବଦଅଲିର ଗୁଲ୍‌ଖଟିର ନିଶା ଯେତେବେଳେ ସମସ୍ତଙ୍କୁ ଘାରିଆସେ, କେତେ ବାଦସାହୀ ହିସାବ, ନବାବୀ ମଉଜ ମଜଲିସ୍‌ର ସୁରାଗ ମିଳେ ।

ତାହାର ଭିତରେ ପ୍ରେତପରି ପୁଲିସ୍‌ର ଯୋଡ଼ା ବି ଆସି ପଡ଼େ । ସେ ଆସିଲେ କେଉଁଦିନ ପାଇଣାରେ, କେଉଁଦିନ ବୁଢ଼ାର ସେହି ରକ୍ଷିତାଟିର କଅଁଳ ବ୍ୟବହାରରେ ଓ କେଉଁଦିନ ନିଜର କ୍ଷମତା ଜାହିର କରି ଦଠା ଗୋଟାଏ ବାଧା ଗୋଇଠା ଦେବାରେ ସନ୍ତୁଷ୍ଟ ହୋଇ ଫେରେ ।

ସାଇରେ ତାହାର ଫଶା ଲୋକଠା ଡି. ଷ୍ଟ୍ରା ଭମିକ୍ ଗ୍ରେର ଗଲେ ଯେତେବେଳେ ସେମାନେ ଏଡାଲ୍ କରନ୍ତି, ପୁଲିସ୍ ଆସି ବଦଅଲିକୁ ଧରି ଅନେକ ହଇରାଣ କରେ ।

ଦିନେ କେଳଏ ସେମିତ ଗମତ ଜମେ ନାହିଁ । ଶେଷକୁ ଦିନେ ବିଦଥ ଅସି ପଡ଼ୋଶୀ ବାବୁଘର ପିଣ୍ଡାରେ ବସି ନିଜର ସଦୋଃ-ପଣିଅ କଥା ଶୁଣାଏ ।

ତାବୁର ଲକ୍ଷ୍ମ ଚମକେ ଉଚରେ । ଯେ ସବୁ ଶୁଣେ, ଭାବେ ଗ୍ରେଚକୁ ଜଗୁଅଲ କଲେ ଗ୍ରେଦ ନ ହେବ, ଏଇଥିପାଇଁ । ଆଜ ବିଦଅ ଚଳପରେ ଗୃକରକୁ କହେ ଛନ୍ନପପରର ହେପାଜତ ଭଦ୍ଦବାପ ଇଁ ।

ବାବୁ, ବ'ବୁଘର ପିଲ୍ଲ, ବାବୁଘର ଗୃକର, ସମସ୍ତେ ବିଦଅ ବିଷୟରେ ସବୁ ଜାଣିଯାନ୍ତି । ବିଦଅ ଜଣେ ମଣିଷରେ ଗଣାହୁଏ । ଭାବନ୍ତି, ତାହାର ଅସ୍ତିତ୍ୱ ସମସ୍ତଙ୍କୁ ଭାବିବାକୁ ବାଧ୍ୟକରେ ।

ସେହ୍ନ କେତୋଟି ଦିନ ଥିଲ ବିଦଅର ଗ୍ରସିଚକର ସବୁଠାରୁ ଭଲ ଗ୍ରନ୍ଥିଫଳ ।

( ୩ )

ପୁଲିସ୍ ଭାବଲ ଯେ ସେହ୍ନ ଗୁଲିଗଣଠିରେ ବହୁତ ପଇସା ଲଭ ମିଳୁଛି । ଆଜର ଅଧିକ ଚଗ୍ଭନ୍ଦବାରେ ଗୁଲିଗଣଠି ଭାଙ୍ଗିଗଲା ।

ବିଦଅ ଅପକ୍ୱା ଅନ୍ଧାରଅ ମସ୍ତିଷ୍କରେ ଭାବିଲା ଯେ, ଏମିତ ସେ କେଉଁଠୁ ବୋହେଇ ଅଣି କେତୋଟିଙ୍କୁ ଟୁଲ କରଇଥିଲା ଯେ ହେଲନାହିଁ । ସେ ଅନେକ ନୂଆ ଉପାୟ କଞ୍ଜିଲ୍ଲ—ତଥାପି ବିଫଳ ହେଲା । ପୁଲିସ୍ର ଦୌରାତ୍ମ୍ୟରେ ଗୁଲିଗଣଠି ଭାଙ୍ଗିଲା । ଗୁଲିଅଙ୍କ ମେଳ କମ୍ ହେଲା । ଗାଈ ଚୋରୁ ଅଜ ପଦାରେ ବେଶି ବୁଲିଲେ ନାହିଁ । ତାହାର କାଞ୍ଜିଅହାଜ୍ଞସ୍ ମାଲିକ ବିରକ୍ତ ହେଲା । ବିଦଅ କିଛି ବୁଝିପାରିଲା ନାହିଁ । ସାଉଁଟି ଅଣିଥିବା ମାଇକିନିଅଙ୍କୁ ବେଣୀ ବେଣୀ ଛେଚଲା ।

ଏହିସବୁ ଯୁଦ୍ଧ ଭିତରେ ଦିନକର ସେ ବି ଯେମିତି ଲୁଅଡ଼ୁ ଆସିଥିଲା, ସେମିତି ଲୁଅଡ଼େ ବି ଅଦୃଶ୍ୟ ହୋଇଗଲା ।

ବୁଦଆର ଅପନ୍ତରରେ ଯେଉଁ ଫୁଲଟି ଥିଲା, ସେଇଠା ହଜିଗଲା । ବୁଦଆ କାନ୍ଦିଲା—ଗୁରଅଡ଼େ ଖୋଜିବୁଲିଲା ।

ସମସ୍ତେ ଦେଖିଲେ । ବୁଦଆ ପର ଲୋକ, ସୃଷ୍ଟିର ଗୋଟିଏ ଗୋଟିଏ ପ୍ରହସନ ପରି । ସେମାନଙ୍କୁ ଦେଖିଲେ ମନେହୁଏ ଯେ ବିଧାତା କେଉଁଠି କେଉଁଠି ବି ଖାଲି ଦୁଃଖର ଖ୍ୟାତଦେଇ ତାହାର କଣ୍ଢେଇ ଗଢ଼ିଛି । ସେହିପରି ଲୋକ ବୁଦଆର ବି ଦୁଃଖ ହେଲା । ବୁଝାଲେ ସେ ସୁଖରେ କେବେ ଦିନେ ଭାଗୀ ହୋଇଥିବ ।

ଖଟିଟି ତେଜ୍ ଥିଲାବେଳେ ବୁଦଆ ହସୁଥିଲା ବୋଲି ମନେ କରୁଥିଲା; ସେତେବେଳେ ପଡ଼ା ପଡ଼ୋଶୀ ଦୁଃଖକର ତାହା କଥା ପରସ୍ପରରେ କୁହାକୁହି ହେଉଥିଲେ । ଏତେ ଦୁଃଖୀ କିଏ ସୃଷ୍ଟିରେ ସମ୍ଭବ ?

କିନ୍ତୁ ଯେତେବେଳେ ବୁଦଆ କାନ୍ଦିଲା, ସେହିମାନେ ଅଣ୍ଟଫା ହୋଇ ହସିଲେ । ବୁଦଆ କିଏ ଦିନେ ପୁଣି ସୁଖରେ ଥିଲା ? ତାହାର ସୁଖଟା ଥିଲା କେଉଁ ସୁଖରେ ? ବୁଦଆ ତ ଚିର ଦୁଃଖୀ ।

( ୪ )

ବୁଦଆ ଖାଇବାକୁ ମାଗେ । ବାବୁଘରୁ ଥରେ ଅଧେ ମିଳେ । ଥରେ ଅଧେ ବି ମିଳେନାହିଁ ।

ବୁଦଆ ସକାଳେ ଆସି ଦିନେ ଦିନେ ଶୁଣାଏ 'ମା, କାଲି ରାତିରେ ମୁଁ ଝାଡ଼ାଫେରି ଉଠିଥିଲି ଯେ, ଦେଖିଲି ଆପଣଙ୍କ ପାଚେରିରେ ଯୋଡ଼ାଏ ଚୋର । ମୁଁ ପାଟିକଲି ସେମାନେ ପଳାଇଲେ । ଧାଇଁଥାନ୍ତି, କିନ୍ତୁ ପାରିଲି ନାହିଁ । ମତେ ଜଗାଇ କରିଦେଲ ଗୁଲିଅମାନେ ଏଠି ସେଠି ବୁଲୁଛନ୍ତି ।'

ଏମିତି ଏଣୁତେଣୁ ଟେପକର ବାବୁଘର ମା'ଙ୍କୁ ସନ୍ତୁଷ୍ଟ କରେ। ତାଙ୍କ ଘରେ ଧରା ହୋଇଥିବା ମୂଷାକୁ ଜନ୍ତାରୁ ଆଣି ସେହି ବାଦଅ ମାରେ, ପଇସାଏ ବକସିସ୍ ନିଏ।

ବାବୁଙ୍କର କୁକୁଡ଼ା ଖାଇବା ଇଚ୍ଛାହେଲେ, ବାଦଅ ଅଣାଏ ମୂଲ୍ ନେଇ ସେଇଟାକୁ ମାରେ। କାରଣ, ନିଜେ ବାବୁ କି ବାବୁଙ୍କ ଘରର କେହି ପାପର ଭାଗୀ ହେବାପାଇଁ ଲୋଡ଼ନ୍ତି ନାହିଁ। ବାଦଅ ଆଗ୍ରହରେ କରିଯାଏ।

ସେ ପ୍ରମାଣ କରେ ଯେ, ସଂସାରରେ ଖାଲି ପୁଣ୍ୟ କଲେ ମଣିଷ ବଞ୍ଚେ ନାହିଁ। ପାପ ଅମାଚ କଲେ ବି ମଣିଷ ବଞ୍ଚିବ। ଆଉ ତାହାର ଦୁଃଖ ଭିତରେ ପାପ ପୁଣ୍ୟ କି ପ୍ରଭେଦ ଅଣିବେ ?

( ୫ )

ଯେତେବେଳେ ବାଦଅ ଏମିତଭାବରେ ଅନେକ ଛୋଟ ମୋଟ କାମ କରି ହେଲି ପଡ଼ାର ଲୋକଙ୍କର ଅତି ଦରକାରୀ ହୋଇ-ପଡ଼ିଥିଲା, ହଠାତ୍ ଦିନେ ସେ ଚାଲି ପଡ଼ିଲା।

ସମସ୍ତଙ୍କ ମୁହଁରେ ଆହା ! କାରଣ ପୁଣି ଜଣେ ଲୋକ ଖୋଜିବାକୁ ହେବ, ଯେ ମୂଷାଙ୍କୁ ମାରିବ; କୁକୁଡ଼ାଙ୍କୁ ମାରି ମାଉଁସ କରି ବାବୁଙ୍କୁ ଦେଇଯିବ; ଆଉ ଆଉ ପ୍ରକାରର କଷ୍ଟ କାମ କରିଯିବ।

ଲୋକେ କହନ୍ତି ଭଲ ଲୋକ ମଲେ ଲୋକ ତାହାକୁ ଝୁରନ୍ତି, ତାହାକୁ ଝୁରି ଦୁଃଖନ୍ତି, ସେ ସ୍ୱର୍ଗକୁ ଯାଏ। ସେମିତି ବାଦଅକୁ ସେହି ଅଞ୍ଚଳରେ ପୁଣ୍ୟବାନ୍ ଲୋକେ ଝୁରୁଥିଲେ। ସେ କାହିଁ ସ୍ୱର୍ଗକୁ ନ ଯାଇଥିବ ?

କିନ୍ତୁ ବଞ୍ଚିଥିଲାବେଳେ ଯାହାକୁ ଦୁଆର ଦଅ ହୋଇଥିଲା, ମଲାପରେ ସେ କଣ ସତେ ସ୍ୱର୍ଗ ପାଇବ । ଏ କଥା ବିଗୁର ଅନେକ ଲୋକ ବେଦନ କରି ଛାଡ଼ି ଯାଇଛନ୍ତି । ମୀମାଂସା ହୋଇନାହିଁ କିନ୍ତୁ ଅପନ୍ତରରେ ବି ଫୁଲ ଫୁଟେ ।

---

# ପାଚିଲା ପତ୍ର

ପାଣି, ପବନ ଓ ହାର ପାଇ ଗଛରେ ଯେତେବେଳେ କଅଁଳ ପତ୍ରଗୁଡ଼ିକ ଛନ ଛନ ହୋଇ ଅଲ୍ଲଅଲ୍ଲ ଫିଟିଥାଏ ସେତେବେଳେ ତା ହାର ଭାବ ଆଦର । ମଣିଷର ଯୌବନ ସେମିତି ସଂସାରରେ ବଡ଼ ପ୍ରିୟ ହୁଏ । ସମସ୍ତେ ଖୋଜନ୍ତି ଯୌବନର ତେଜ, ଚଞ୍ଚଳତା, ଓଜ, ପ୍ରଖର ସ୍ନେହ ଓ ବଳିଷ୍ଠ ପ୍ରବଣତା ।

ଆଜି ଯାହାକୁ ବୁଢ଼ୀ ବୋଲି ଡାକୁଛନ୍ତି ତାହାର ଦିନେ ସେମିତି ଯୌବନ ଥିଲା । ଅଶୀ ବରଷ ଦେହ ଉପରେ ପାର କରିସାରିଲାରୁ ସିନା ଦେହ ଅଧା ବଙ୍କେଇ ଯାଇଛି । ମୁଖଦନ୍ତୁସ୍ତ ମୁହଁ ଭିତରୁ କେତେ କେତେ ଦାନ୍ତଗୁଡ଼ିକ ଶୁଖିଲା ଓଠ ଭିତରୁ ପଦାକୁ କୋଡ଼ି ଜାଂକ ପରି ବାହାରି ଆସିଛି । ଦେହ ଶୁଖିଯିବାରୁ ଭିତରର ଶିରା ଓ ତନ୍ତୁଗୁଡ଼ିକ ଦଉଡ଼ି ପରି ମୋଟ ହୋଇ ଚମ ଭିତରୁ ଦିଶୁଛି । ମୁଣ୍ଡରୁ କଳା ବାଳ ଉପୁଡ଼ିଯାଇ ଛୋଟ ଛୋଟ ହୋଇଛି ବାଳ ଧଳା ଝୋଟପରି ଫୁରୁଫୁରୁ ହେଉଛି ।

ଅଶୀ ବରଷରେ ଯାହାର ମରଣ ହୋଇନାହିଁ, ଯାହାର ଦାନ୍ତ ପଡ଼ିନାହିଁ, ଯାହାର କାମ କରିବା ଶକ୍ତି ଅଛି ଯେ ନିଜର ପେଟ-ପାଟଣା ପାଇଁ ଦୁଅର ଓଳା ଓ ବାସନ ମଜା କରିପାରୁଛି, ଖରା ବର୍ଷାକୁ ଯେ ଡରୁ ନାହିଁ ତାହାର ଦେହ ଯେ ଦିନେ ଯୌବନରେ ଫାଟି ପଡ଼ୁଥିଲା ସେଥିରେ ଆଶ୍ଚର୍ଯ୍ୟ କିଛି ନାହିଁ ।

ଏହି ବୁଢ଼ୀଟିର ଯେତେବେଳେ ଯୌବନ ଥିଲା ଓ ଯୌବନର ଦରକାରୀ ପୋଷାକ ଲଜ, ନମ୍ରତା, କୋମଳତା ଆଦି ଥିଲା ସେତେ-ବେଳେ ସେ ଭାରି ଜଣାଶୁଣା ଲୋକ ଥିଲା । ସେଇ ଯେତେଟି ଲୋକ ତାହାର ଯୌବନକୁ ଲୋଭ କରଥିଲେ ସେଥିରୁ ସେ ଜଣକୁ ଆଦର ଥିଲା, ତାହାର ସେ ଥିଲେ ରକ୍ଷାକର୍ତ୍ତା, ସ୍ୱାମୀ, ମୁରବି ସେହି ତାହାକୁ ଲୁଗା, ଗହଣା ଓ ସୁଖ ଦେଉଥିଲେ । ତାଙ୍କ ପରେ ତାହାର ଅସୁବିଧା ହେବ ବୋଲି ତାହାପାଇଁ କିଛି ଜମି ଓ ଗଣ୍ଡେ ଘର ଦେଇ ଯାଇଥିଲେ ।

ପିଲାଦିନେ ତାର ନାଁ ଥିଲା ବୁଢ଼ୀ—ଆଜି ବୁଢ଼ୀ ହୋଇ ପିତାରେ ନାଁଟି ତାହାର ବୟସ, ଅବସ୍ଥା ଓ ନାଁ, ଏକଟି ତନୋଟି ଯାକର କାମ କରୁଛି । ଆଜି ସେହି ବୁଢ଼ୀ ଗୃହକର୍ତ୍ତ୍ରୀ । ତାହାର ଘର ଭଙ୍ଗୀ ହୋଇଗଲାଣି । ଯୌବନ ଅନେକ ଦିନରୁ ବାସ୍ପ ଭରେ ହଜିଗଲାଣି । କିନ୍ତୁ ପ୍ରାଣଟି ରହିଯାଇଛି ।

ତାହାର ପର ଦୁଃଖୀର ସଂସାର ସେ କରୁଛି । ତାହାର ପୁଅ ଝିଅ, ନାତି ନାତୁଣୀ ଦେଇଥିଲେ । ପୁଅ କେଉଁଆଡ଼େ ଗଲା ତାହାର ଖବର ନାହିଁ । ସେ କଥା ସେ ଭୁଲିଗଲାଣି । ଝିଅ ଥାଏ କଟକରେ । ଯେମିତି ଜଣକୁ ସେ ନେଇ ଘର କରି ରହିଛି । ତାହାର ପୁଅ ଝିଅଙ୍କୁ ବୁଢ଼ୀ ନାତି ନାତୁଣୀ ବୋଲି ପାଖରେ ରଖେ ଓ ସେମାନେ ବି ଆଦର କରନ୍ତି । ଟେକି ହୋଇ ଘାତ ଲୁଗା ଅଭାବରେ ପଡ଼ିଗଲେ

ସ୍ନେହ ଆଦରର ମୂଲ୍ୟ ବି ବଦଳିଯାଏ । ସେଥିପାଇଁ ବୁଢ଼ୀ ଅନ୍ୟ ଘରେ ଦୁଃଖଧନ୍ଦା କରେ । ଝିଅ ଘରେ ରହୁ ମାସକୁ ଟଙ୍କାଏ ଭଡ଼ା ଦିଏ । ବାବୁମାନଙ୍କ ଘରୁ ପିଠାପଣା, ଖଜାମିଠାଇ ମିଳିଥିଲେ ଲୁଚେଇ ଓ ପେଟରୁ ବଞ୍ଚେଇ ନେଇଆସେ ଝିଅ ଓ ନାତି ନାତୁଣୀ ପାଇଁ ।

ସମସ୍ତଙ୍କର ସେ ଅଦରକାସ୍ତି । ବୁଢ଼ୀ କାମ ନ କଲେ କେହୁ ଖାଇବାକୁ ଦେବେନାହିଁ । ସେଥିପାଇଁ ସେ କାମ କରେ—ବର୍ଷରେ ବାରମାସ । ବେଶୀ ଜାଡ଼ ପଡ଼ିଲେ ସେ କୁଣ୍ଠି ଯାଏ । କାମକୁ ପାରେ-ନାହିଁ । ତଥାପି ସେ ରୋଜଗାରରୁ ଛୁଟି ପାଏ ନାହିଁ । ଘରେ ବସି ବସି ବାଙ୍ଗ ବଳେ । ପର ସିଲାଇ କରେ ନଇଲେ କାଗଜ ଠୋଙ୍ଗା ତିଆରି କରେ ।

ସେମିତି ସେ କୁଆଡ଼େ ତାହାର ଅଣ୍ଟା ଗଣ୍ଠିଆରେ ତିନିକୋଡ଼ି ଟଙ୍କା ସାଉଣ୍ଟିଛି । ସେତିକ ପାଇଁ ଝିଅ ଓ ନାତିଟି ସବୁବେଳେ ତାହାର ମରଣ ମନାସୁଥାନ୍ତି । "କେତେବେଳେ ବୁଢ଼ୀଟା ମଲେ ସେତିକ ଟଙ୍କା ମିଳିବ ।" ବୁଢ଼ୀ ମରେନାହିଁ ।

ଏମିତି ଦରକାସ୍ତି ଲୋକଟି ଅଦରକାସ୍ତି ହୋଇ ପଡ଼ିଥାନ୍ତା ଅବା ସେହି ତିନିକୋଡ଼ି ଟଙ୍କା ରଖି ନ ଥିଲେ ଓ ମାସକୁ ଘରଭଡ଼ା ଟଙ୍କାଏ ଦେଇ ନ ପାରୁଥିଲେ ଝିଅ ବି ତଡ଼ିଦେଇ ପାରନ୍ତାଣି । କାମକରି ନ ପାରୁଥିଲେ ବାବୁଘରମାନେ ବି ତାହାକୁ ଦୁଆର ବନ୍ଦ କରନ୍ତେଣି ।

ବୁଢ଼ୀ ତାହାର ସବୁ ଦୁଃଖ ନେଇ ସନ୍ତୋଷରେ ଥାଏ । ପ୍ରତିଦିନ ଅଦା, କାଗଜି ଲେମ୍ବୁ ଖାଏ । ରାତି ଓଳି ଭାତ ଖାଏ ନାହିଁ । ପ୍ରତିଦିନ ଗାଧୋଇ ଯାଏ । ଗାଧୋଇ ଆସି ଦୁବଘାସ ଆଣି ଗୋଟ ବାଛୁରୀଙ୍କୁ ଖାଇବାକୁ ଦିଏ । ଭୁଜା ଭାଜି ଖାଉଥିଲେ କୁକୁର ଓ ଚଢ଼େଇଙ୍କୁ ଦାନା ଅଧାରୁ ଦିଏ । ଭଗବାନ ଶୁଣେ । ରଜରେ

ସଞ୍ଚୟକରେ । ସେ ଅଳ୍ପକାର ପାଇଁ ତାହାର ବାଟଖରଚ ଠିକ୍ କରିବାରେ ଲାଗିଥାଏ । ନିଜ ପଇସାରୁ କରେ ବୋଲି କେହି କିଛି କହନ୍ତି ନାହିଁ । ଖାଲି ଝିଅ ବେଳେ ବେଳେ କଠୋର କରେ ଯେ ବୁଢ଼ୀ ପଇସାଗୁଡ଼ାକ ବାହାରବଗୁ କରିଦେଉଛି । ଥିଲେ ତାହାର ରୋଗ ବାର୍ଦ୍ଧକ୍ୟରେ କ'ଣ କାମକୁ ପାଆନ୍ତା ନାହିଁ ।

ବୁଢ଼ୀ ତାହାର କର୍ତ୍ତବ୍ୟ କରିଯାଏ । କେହି କେହି ତାହାର ଭଲ ଗୁଣର ପ୍ରଶଂସା କରନ୍ତି । ସେମିତି କେହି କେହି ତାହାର ଅତୀତକୁ ନିନ୍ଦା କରନ୍ତି । କିନ୍ତୁ ତାହାର ନିଜର ଝିଅକୁ ଛାଡ଼ିଲେ କେହି ତାର ମରଣ ପାଆନ୍ତି ନାହିଁ । ବୁଢ଼ୀ କାହାକୁ କଷ୍ଟ ଦେଉ-ନାହିଁ କି କାହାକୁ ଅସୁବିଧାରେ ପକାଉ ନାହିଁ ।

ଦେହ ହାଙ୍ଗରେ ରୋଗ ରହିଛି । ବୁଢ଼ୀଟି କି ବେଳେ ବେଳେ କହେ ତାର ମରଣ କେବେ ହେବ, କେମିତି ହେବ ଠାକୁର ଜାଣନ୍ତି । ମରିଗଲେ ସେ ତରିଯିବ । ପାପୀ ସେ—

ବୁଢ଼ୀକୁ ଏମିତି ଥରେ କାର୍ତ୍ତିକ ମାସରେ ଜର ହେଲା । ସେଥର ସେ ତାହାର ପ୍ରୌଢ଼ଶ ବର୍ଷ ଭିତରେ ପ୍ରଥମଥର ପାଇଁ ହରିଷ କରିପାରିଲା ନାହିଁ । ବି କୋଡ଼ି ହେବା ପର ଆରମ୍ଭ କରିଥିଲା, ଦି କୋଡ଼ି ହରିଷ କରିଛି । କେବେ ରୋଗ ବଇରାଗ ହୋଇନାହିଁ । ଟୁବ୍ ବେଶି ହେଲେ ଧାନେ ଓଳିଏ ସର୍ଦ୍ଦି ହୋଇଛି ।

ଦି'ଦିନ, ତିନି ଦିନ, ଚାରି ଦିନ । ଜର ଛାଡ଼ିଲା ନାହିଁ । ବୁଢ଼ୀ କି ନୂଆ ହୋଇ ଜରରେ ପଡ଼ିବାରୁ ବଡ଼ ବ୍ୟସ୍ତ ହୋଇପଡ଼ିଲା । ଝିଅ ଆଣି ଏଣୁ ତେଣୁ ଔଷଧ ଦେଲା, ବୁଢ଼ୀ ଖାଇଲା ନାହିଁ ।

'ଔଷଧ ଖାଉ ନାହିଁ—ଜର ଛାଡୁ ନାହିଁ । ମରିବ ବୋଲି କହୁଛି, ମରୁ ନାହିଁ । ଝିଅ ଅଧି ଅନ୍ୟମାନଙ୍କୁ ସେହି ଦୁଃଖ ଓ

ଅଭିଯୋଗ କରୁଥାଏ । ତାହା ପାଖରେ କଣ ଅଛି ବୁଝା ପଡ଼ୁନାହିଁ । ଏତେ ଜରରେ ବି ସେ ତାର ହୋସ୍ ରଖିଛି । ଥରେ ଝିଅ ଅଣ୍ଟା ଟିପି ଦେବା ବାହାନାରେ ଗଣ୍ଠିଆକୁ ଛାଣିଥିଲା ଯେ ବୁଢ଼ୀ ଝିଙ୍କାରି ଉଠିଲା ଯେ ସେ ମରିନାହିଁ । 'ଥାଉ, ତା ଟଙ୍କା । ସେ ଟଙ୍କାକୁ କିଏ ନେଉଛି ?'

ବାର ଦିନ ହେଲା । ବୁଢ଼ୀ ଆଉ ଉଠିପାରେ ନାହିଁ । ସେମିତି ପଡ଼ିଥାଏ । ଝିଅ ହାତରେ କହି ପଠାଇଲା ତାର ବାପଘରକୁ । ଟିକିଏ ମାଛ ତିଅଣ ହେଲେ ସେ ଖାଇବ । ଝିଅ ଆସି ଲମ୍ବା ଗୌର-ଚନ୍ଦ୍ରିକା କରି କାର୍ତ୍ତିକ ମାସରେ ମାଛଖିଆ କଥା କହି ଜିଭ କାମୁଡ଼ିଲା । ଆଉ କହିଲା, ବୁଢ଼ୀ ଏଥର ମରିବ କାରଣ ସେ ତ୍ରିଶ ବର୍ଷ ହେଲା ଅଇଁଷ ଛାଡ଼ି ସେହି ଜରରେ କାର୍ତ୍ତିକ ହବିଷରେ ମାଛ ପାଇଁ କହାଳ ଲଗେଇଛି ।

ସେହି ଜରରେ ସେ ମାଛ ଖାଇଲା । ଭାରି ଖୁସି ହେଇ ଆଶୀର୍ବାଦ ପଠାଇଲା । ଆଉ ମଗାଇଲା ମାଂସ ତରକାରି । ସେତକ ସେ ପୁଣି ତୃପ୍ତି ହୋଇ ଖାଇଲା । ବାପଘର ଏତକ ଦେଖି ସୁବିଧାରେ କାହିଁକି ଧର୍ମ ନଷ୍ଟ କରିବା ପାଇଁ ତାହିଁ ଆବେଦନ ପୁଣି ମାଛ ତରକାରି ପଠାଇଲେ । ସେଦିନ ଆଉ ବୁଢ଼ୀ ଖାଇଥି ନାହିଁ । କିନ୍ତୁ ଏବେଣି ଝିଅ ଗାଳି ଦେଉଥାଏ ଯେ ଧର୍ମଯାକ ନବ୍ରୁ ବୁଡ଼େଇ ଦିନେ ତ ଖାଇଲା, ପୁଣି ବନ୍ଦ କଲାଣି । ମରିବ ଯେ, ପାପୀ ହୋଇ ଯିବ । ତ୍ରିଶ ବର୍ଷର ଧର୍ମ ସବୁ ନଷ୍ଟ କଲା ।

ବୁଢ଼ୀ ତେଣିକି ଝିଅ ଛାଡ଼ିଦେଲା । ଖାଲି ନାତିକୁ କହେ ତାହା ପାଖରେ ବସି ଭାଗବତ ଶୁଣେଇବା ପାଇଁ । ଚୁପ୍ ହୋଇ ପଡ଼ିଥାଏ । ସେଠି ହରାମୂତା କରେ । ବିଛଣାରେ ପଡ଼ିଥାଏ । ପିମ୍ପୁଡ଼ି ଘୁରୁଥାନ୍ତି

ଆସୁଥାନ୍ତି । ତାହାର ବଛଣାଯାକ ପିମ୍ପୁଡ଼ି । ତେବେ ବି ସେ ବ୍ୟସ୍ତ ହୁଏନାହିଁ ।

ଏମିତି ଅଜ ଦ'ଦନ ପରେ । ସେ ଝିଅକୁ ବଗାଦ ଦେଇ ବ୍ରାହ୍ମଣ ଭୋଜନ କରେଇ ଦକ୍ଷିଣା ଦେଲା । ଝିଅ ରଡ଼ୁଥାଏ ଟଙ୍କା ଖରଚ ହେଉଛି ବୋଲି, ତେବେ ବି ପାପ ହେବ ବୋଲି ଚୁପ୍ ରହୁଥାଏ ।

ସମସ୍ତଙ୍କର ଇଚ୍ଛା, କାମନା ଓ ଲକ୍ଷ୍ୟ ସେ ମନ୍ତ୍ର । ସେତକ ସେ ଯେମିତି ବୁଝିପାରୁଥିଲା । ଅଶୀବର୍ଷ ସଂସାରକୁ ଦେଖି ସେ ଜାଣେ ସଂସାରରେ ଦରକାରୀ ହେଉଛି ଧନ ଓ ଅଦରକାରୀ ହେଉଛି ବୁଢ଼ା-ମଣିଷ ଓ ଗରିବ ଲୋକ ।

ମରିବା ଆଗରୁ ସେ ଝିଅକୁ ଡାକି ତାହାର ଗାଣ୍ଠିଆ ଖୋଲିବାକୁ କହି ବୁଝିଲା ଯେ ଦ'କୋଡ଼ି ଗୁଡ଼ାଏ ଟଙ୍କା ରହିଛି । ସେଥିରୁ ସେ ଝିଅକୁ ଦ'କୋଡ଼ି ଦେଇ କହିଲା 'ଅଜ ଯେଉଁ ଗୁଡ଼ାଏଟି ରହିଲା ସେଥିରେ ମୋର କ୍ରିୟା କରି କିଛି ଖଇରାତ କରିଦେବୁ ।'

ଝିଅ ଖୁସିହୋଇ ଏହି ସୌଭାଗ୍ୟର ଖବର ଦେବାପାଇଁ ପଡ଼ୋଶୀଙ୍କ ଘର ଆଡ଼େ ଚାଲି ଦେଉଥିଲାବେଳେ ନାତି କାନ୍ଦ କାନ୍ଦ ଆସି କହିଲା—ବୁଢ଼ୀ ଗୁଲିଗଲା—!

ଝିଅ ସେତେବେଳେ ବୁଢ଼ୀର ବେହିସାବ ବିଷୟରେ କହୁଥାଏ । ସେ କହିଲା 'ଓଃ, ଲୋ ଯେ ଏତେ ହିନ୍ଦସନ୍ତ କରି ମଣିଷ ମୁଣି ଯାଏ ?—ମଲାବେଳେ ତ ବହୁତ ଖରଚ । ପୁଣି କ'ଣ ନା, ଗୁଡ଼ାଏଟଙ୍କାରେ ତାହାର କ୍ରିୟା ଆଉ ଖଇରାତ ସବୁ ହେବ ।'

କିଛି ହେଲା ନାହିଁ । ତାହାର ଦରକାର ନାହିଁ । ବୁଢ଼ୀ ଯେ ଦରକାର ନୁହେଁ ସେତକ ସେ ଗୁଳଣେବର୍ଷ ହେଲାଣି ବୁଝିଥିଲା । ତଥାପି ଈଶ୍ୱର ତାହାକୁ ରଖିଥିଲେ ସେହୁ ସେତକ ଦନ ତାଙ୍କର କ'ଣ ଲାଭ ପାଇଁ କିଏ ଜାଣେ ?

ପାଚିଲା ପତ୍ର ଝଡ଼ିବାଯାଏ ଗଛରେ ଥାଏ ତ ।

---

# ଧନର ଅଭିଶାପ

ଓଡ଼ିଶାର ପାଖ ଗୋଟିଏ ଗଡ଼ଜାତରୁ ସେଠି ମାଟିର ଗୋଟିଏ ବୁନଅଧ ପିଲା ଥରେ ମୂଲ ଲାଗିବା ପାଇଁ କଟକରେ ଅସି ଗାଡ଼ିରୁ ଓହ୍ଲାଇଲାବେଳେ ଗୋଟିଏ ମିସ୍ତ୍ରୀର ଲୋକ ତାହାକୁ ପ୍ରଥମେ ଯାଇ ଷ୍ଟେସନରେ ଧରିଲା ।

ସେଇ ଲୋକଟିର ନାଁ ଦେବରାଜ, ପଞ୍ଚବର୍ଷ ଗୋଟିଏ ଖାକି ପ୍ୟାଣ୍ଟ ଅଉ ଖାକି କମିଜ୍ । ତାହାର ପୁଟୁଳି, ଗୋଟିଏ ଗାମୁଛାରେ ବନ୍ଧା ସେରେ ମୁଢ଼ି ।

ତା ବାପା ମରିଯାଇଥିବାରୁ. ସେ ଖିଅର ହୋଇଥିଲା, ଦୁଇମାସ ନଟେକ । ମୁଣ୍ଡବାଳ ପୁଣି ଜଟିନାଇଁ । ଗାଡ଼ିରେ ଭିଡ଼ରେ ସେ ତବା ଭିତରକୁ ପଶିଲାବେଳେ ଜଣେ ବାବୁ ତାକୁ ଠେଲି ଦେଇଥିଲେ ଯେ ଗାଡ଼ି କବାଟରେ ବାଜି ତାହାର ମୁଣ୍ଡ ପଛପାଖ ଠାଏ ଖଣ୍ଡିଆ ହୋଇ ତାକୁ ରକ୍ତସ୍ନାନ କରାଇଥିଲା । ତାହାର ସେଇ

ଝେଉର ରକ୍ତ ଠା'କୁ ଠା' ମଇଳା ଖାକି କାମିଜ୍‌ରେ ପଡ଼ି ତା ଲଣ୍ଡା ମୁଣ୍ଡକୁ ସାମିଲ୍ କରି ପରିଚୟ ଦେଉଥିଲା, ସେ ଗୋଟିଏ ଦାଗୀ ।

ତା ମୁଣ୍ଡର ଉପରେ କନାପୋଡ଼ା ଦିଅହୋଇ ଖଣ୍ଡେ ମଇଳା କନା ବନ୍ଧା ହୋଇଥିଲା । ତାକୁ ଦେଖିଲେ କେମିତି ଆଶଙ୍କା ଆସୁଥିଲା ମନରେ ।

ସେ ଠିକଣା ଦେବାକୁ ନାରାଜ, କାରଣ ସେ ମୂଲିଆଘର ପିଲା ନୁହେଁ । ସେ ଗଡ଼ର ଏକଦା ସଚ୍ଛଳ ଅଧୁନା ଦରିଦ୍ର ଓ ଅନ୍ନ-ଭିକାରୀ ପରିବାରର ଗୋଟିଏ ପିଲା । ତା ନୂଆ ଜୀବନ ତାକୁ ଲଜ୍ଜିତ କରାଉଥିଲା । ସେ ଲଜ ତାର କାଟି ନ ଥିଲା ।

ସେ ଠିକଣା ଦେବାକୁ ନାରାଜ, ଅଥଚ ସମସ୍ତେ ତା ବିଷୟରେ ଜାଣିବାକୁ ବ୍ୟସ୍ତ । ଫଳରେ ସେ ପାଠି ବନ୍ଦକରି ରହେ ଅଧିକ ସମୟ । ତା ପାଖକୁ ଆସିଥିବା ମୂଲିଆମାନେ ମନେ କରନ୍ତି, ସେ ଗୁଣ୍ଡା ।

ମିସ୍ତ୍ରୀ ତାକୁ କାମରେ ଲଗାଇବାକୁ ଗୁହିଁଲାରୁ ସେ କହିଲା ଯେକୌଣସିଠାରେ ଚାକର ରଖିଲେ ତାକୁ ସୁବିଧା ହୁଅନ୍ତା ।

ତା ରୂପ ତାକୁ ମୂଲିଆର କାମକୁ ସୁପାରିସ୍ କରୁ ନ ଥିବାରୁ ମିସ୍ତ୍ରୀ ତାକୁ ମିସ୍ତ୍ରୀର ଜଣେ ବାବୁ ଘରକୁ ପଠାଇଲେ, ତାଙ୍କ ଚାକର ଅଭାବ ଦୂର କରିବାକୁ ।

ସେଠି ସେ ପ୍ରଶ୍ନ ପରେ ପ୍ରଶ୍ନ ଶୁଣିଲା, ସେ କିଏ ? ଦେଖିବାକୁ ମୂଲିଆ ପରି ନୁହେଁ । କଥା କହୁଛି କମ୍ । ଦଶୁଚି ଚୋର ପରି । ଯେତେବେଳେ କଟକର ପୁଲିସ୍ ସାହେବ ନୋଟିସ୍ ଦେଇ ସହର ଲୋକଙ୍କୁ ଜଣାଇଥାନ୍ତି ଯେ ସାଇକେଲ୍ ଚୋରି ଆଉ ଘରର ଚୋରି ବନ୍ଦ କରିବାକୁ ହେଲେ, ପ୍ରତ୍ୟେକ ଗୃହସ୍ଥ ତାଙ୍କ ଘରେ ରହୁଥିବା

ଗ୍ରାହକମାନଙ୍କ ନାମ ଓ ଠିକଣା ଫୁଲସ୍କେପରେ ଦେଲେ ଭଲ ହେବ ।

ସେହି ସନ୍ଦେହଟା ମାଲିକ୍ ମନରେ ରହିଥିବାରୁ ତାଙ୍କ ପ୍ରଶ୍ନ ଯେତକ ସନ୍ଦେହମିଶା ହେଉଥିଲା, ଦେବରାଜର ଉତ୍ତର ଠିକ୍ ସେତକ କୁହୁଡ଼ିଆ ଜଣା ପଡୁଥିଲା ।

ତଥାପି ତାକୁ ଘରକାମ ନ ଦେଇ ବାହାରଜିନିଷ କାମରେ ବାବୁଘର ଲଗାଇଦେଲେ ।

ଦେବରାଜ କାମ କଲା ଭଲ—ଦ'ଗୁଣ । କାହାରି ସାଙ୍ଗରେ କଥା କହେ ନାହିଁ । କାରଣ ସେ ମୂଲିଆ ନୁହେଁ । ସେଇ ଜୀବନରେ ନୂଆ ପାଦ ଦେଉଥିଲା । ଷୋଳ ଅଣା ମୂଲିଆ ହେଇନାହିଁ, ତେଣୁ କାମରେ ଠକାଇବା ଶିଖି ନଥିଲା । ସେ କାମ କରିଗଲେ ଭଲପରି ।

ତେଣୁ ବାବୁ ସନ୍ଦେହ କଲେ ଯେ ସେ ଚୋର । ଜେଲଖାନାରେ ବୋଧହୁଏ ରହିଥିଲା । ସେଥିପାଇଁ ଭଲ ବଗିଚା କାମ ଜାଣିପାରୁଛି । ଆଜି ଘରେ ରହି ବେଳ ଉଣ୍ଡି ଚୋରି କରିବ ବୋଲି ସେ ତାମରେ ସନ୍ତୁଷ୍ଟ କରିପାରୁଛି ।

ସେ କାମ କରୁଥିଲା ଯେ କାମରେ ମାଲିକଙ୍କୁ ସନ୍ତୁଷ୍ଟ କରି ନିଜର ପେଟପାଟଣା ଠିକ୍ କରିବ । ପ୍ରଥମ ହୋଇ କାମ କରୁଥିଲା ବୋଲି ତାହାର ଉତ୍ସାହ ଥିଲା ବହୁତ ବେଶି ।

ତାହାର ଅତିରିକ୍ତ ଆଗ୍ରହ ଓ ଉତ୍ସାହ ତେଣେ ବାବୁଙ୍କରେ ବିଚାରର ଅବତାରଣା କରାଉଥାଏ । ପାଖେ କହୁଥାନ୍ତି ଯେ ସେ ଚୋର, ଆଉ ପାଖେ କହୁଥାନ୍ତି ଯେ ସେ କାମିକା ।

ଘର ଗୃହିଣୀ ପାଇଁ ସେ ଆସିଥିଲା । ବଗିଚା କାମ ମିଳିବାରୁ ସେ କହିଲା, ମୁଁ ବଗିଚା କାମ ଜାଣିଛି, ଘରକାମ ଜାଣିନାହିଁ ଭଲ । ତାଙ୍କୁ ବଗିଚା କାମ ଦିଆହେଲେ ସେ ରହିଥାନ୍ତା ।

ତେଣେ ବାବୁଘରେ କଥା ପଡ଼େ, ସେ କଥା କହୁନାହିଁ ବେଶି, ବୋଧହୁଏ ଓଡ଼ିଆ ଭଲ ଜାଣେ ନାହିଁ । ବାହାରର ଲୋକ—କେବେ ଓଡ଼ିଶାରେ ଥିଲା, ସେ ଭାଷା ଭୁଲିଯାଇଛି । ଭଲ ପାରୁନି ନାହିଁ । ଶଙ୍କା ପଡ଼ିଯିବ ବୋଲି ସେ ଧୀରେ ଧୀରେ ସୁନ୍ଦର ସୁନ୍ଦର କହୁଛି । ସେଥିପାଇଁ ଅଧିକ କାରରେ କହୁନାହିଁ ।

ତା'ହେଲେ ସେ ବାହାରର ଜଣେ ଚୋର । ଘରୁ ଚୋରି କରିବ ବୋଲି ବିଶ୍ୱାସ ଜନ୍ମାଇବା ଆରମ୍ଭ କରୁଛି ।

ସଞ୍ଜବେଳେ ତା ମୂଲ ଦିଆହେଲା । ତାକୁ କୁହାଗଲା, ସେ ଅନ୍ୟଠାରେ ଯାଇ ରହୁ, ସକାଳେ ଆସି କାମ କରିବ ।

ଦେବରାଜ ଆପତ୍ତି କଲା, ସେ ରାତିରେ କେଉଁଠି ରହିବ ଜାଣେ ନାହିଁ । ବାବୁଘରର ଏତେଗୁଡ଼ାଏ ଘରୁ ସେ କେଉଁଠି ହେଲେ ଗୃହର ଚାକରଙ୍କ ପାଖରେ ରହିଯିବ ।

ଏଥିରେ ବାବୁଘରେ ଚିନ୍ତା ହେଲା—ଚୋର କି ? ରାତିରେ ତାହାର ବଳ ବଢ଼ିବ—ବୁଦ୍ଧି ବଢ଼ିବ । କିଏ ପାରେ—ନା—ସେ ଯାଉ ।

ତାକୁ କୁହାଗଲା, ସେଠି ଶୋଇବାର ସୁବିଧା ନାହିଁ ।

ଦେବରାଜ କହିଲା, ସେଥିକି ତାହାର ପରବାୟ ନାହିଁ । ସେ ଭାତ ଦି'ଟା ବଳକା ଜଳଖିଆ ଖାଇଦେଇ ଶୋଇଯିବ । ସେମିତି ଭାତ ତାହାର ଲୋଡ଼ା ନାହିଁ ।

ଏଁ—କହୁଛି 'ପରବାୟ' । ସେ ତାହହେଲେ କଣ ଚୋର କି ? ଖୋଲନ୍ତା, ଚୋର ?

ବାବୁ ଆସି ପଚାରିଲେ 'ତୁ କୁଆଡ଼େ ଦାଗୀ—ଜେଲ ଯାଇଥିଲୁ ?'

ଦେବରାଜ ଠୋସ୍‌ରେ କହିଲା, 'ମୁଁ କଣ କସୁର କରିଛି କି ଜେଲ ଯିବ ? ପୁଲିସ୍‌କୁ ପଚାରନ୍ତୁ ନାହାନ୍ତି ?'

ଏଁ କହୁଛି 'କସୁର ?' ତାହାହେଲେ ସେ କଣ ଓଡ଼ିଆ ଜାଣେ ନାହିଁ। ଭିନ୍ନ ଭିନ୍ନ କହୁଚ।

ଦେବରାଜଙ୍କୁ ପଚେରି ଦିଅହେଲ ବାହାରକୁ. ଦେବରାଜ ଗାଲ୍ ଆଗଉ ଦଲ । ବାବୁ, ଏଟି କାହାକୁ ମୁଁ ଜାଣେ ନାହିଁ। କାହା ପିଣ୍ଡାରେ ଶୋଇବ ? କଏ କଣ କହିବ ?

ଦେବରାଜ କହୁଥିଲ ଏସବୁ, କାରଣ ସେ ମୂଲିଆ ନୁହେଁ। ମୂଲିଆର ଭାଷା ସେ ଶିଖିନାହିଁ।

ରାତିସାରା ବାବୁଘରେ ବିଚାର ଚାଲିଲା। ସେଦିନ ସେ ଯାହା ଯାହା କହିଥିଲ, ସେଥିରୁ ଖିଅ ବାହାର କରି ସେ ଚୋର କି ନୁହେଁ, ଓଡ଼ିଆ କି ନୁହେଁ, ପ୍ରତ୍ୟେକଟିର ଅନୁସନ୍ଧାନ ହେଲା। ଗାଲ୍'ସନ୍ଦେହର ପୃଷ୍ଠପଟରେ ବିଚାର ହେଉଥିବାରୁ ଥରକୁ ଥର ପ୍ରମାଣ ହେଲା ଯେ ସେ ବିଦେଶୀ—ସେ ଚୋର।

ସେ ମିଛ କଥା କହୁଛି।

ବିଚାରରେ ମଧ୍ୟ ଟିକିଏ ହେଲା, ଯଦି ତାହାକୁ ସନ୍ଦେହ ହେଲା ତେବେ ସନ୍ଦେହ ଭିତରେ ତାହାକୁ ରଖି ଲଭ କ'ଣ ? ତାହାକୁ ଆଜି ଦିନକର କାମ ନ କରାଇ ବିଦାୟ କରି ଦିଆଯାଉ।

ପୁଣି ଜଣେ ଘରର ମୁରବୀ କହିଲେ, ଯଦି ଚୋର ନ ହୋଇ ସତରେ ଜଣେ ଶ୍ରମିକ ମୂଲିଆ ହୋଇଥାଏ, ତାହାହେଲେ—ସତେ ଅନ୍ୟାୟ ହେବ।

ଏଣେ ସମସ୍ତଙ୍କ ମନରେ ସନ୍ଦେହର ମେଘ ଘନେଇ ଆସିଲା। ଯିବାବେଳେ ସମସ୍ତେ ଅଫିସ୍ ଅଡ଼କୁ ଚାଲିଯାଉଥିବାବେଳେ ଚାକର ଦେବରାଜ, ଖୁଣ୍ଟି ଉଠାଏଲ୍ ଦେବରାଜ ପାଲଟି ଯଦି ଅପି ବାବୁଆଣୀଙ୍କ ତଣ୍ଟି ଚିପିବାର ଆରମ୍ଭ କଲା—

ନା—ଦେବରାଜରେ ଲୋଡ଼ା ନାହିଁ।

ସକାଳର ଅକାଶରେ ସିନ୍ଦୂର୍ ନ ଫିଟୁଣୁ ଦେବରାଜ ଅପିସ କୋଠା ପାଖରେ ବୁଲୁଛି । କବାଟ ଖୋଲିଲେ ସେ କାମରେ ଲାଗିବ ।

ସେ ମୂଲିଆ ନୂଆ ହେଇ ହେଉଚି । ତା ମନର ଦୁଃଖ ଦୂର କରିବାକୁ ସେ କାମ ଖୋଜୁଚି ।

ପୁଣି ବିଚାର ହେଲା, ତାକୁ କାମରେ ଲଗାଯିବ କି ନା । ଠିକ୍ ହେଲା ଯେ ବାବୁଙ୍କର ଭଡ଼ାଘରେ ଯାଇ ଘାସ ବାଛିବ । ଭଡ଼ାବାଲାଙ୍କ ଅନେକ ଦିନର ଅପତ୍ତି ଯେ ତାଙ୍କ ବାଡ଼ିଅଡ଼ ଘାସରେ ପୂରିଯାଇଛି । ଯୁଦ୍ଧପାଇଁ ମୂଲିଆ ସୁବିଧାରେ ନ ମିଳିଥିବାରୁ ସେ ଜଙ୍ଗଲ ସଫେଇ ହୋଇପାରି ନାହିଁ ।

ବାବୁଙ୍କର ଗୃକର ଯାଇ ଦେବରାଜକୁ ସେଇ ଭଡ଼ାଘର ଦେଖାଇ ଦେଇ ଅସିଲା ।

ଦେବରାଜ କହିଲା, 'ମୁଁ କଣ ଖାଇବି ? ମୋ' ପାଇଁ ଦ'ଟା ଗୃହଳ ପକେଇଥିବ ? ମୁଁ ଘଲେ ଯାଇ ଖାଇଦେବି......ନହେଲେ ତାଙ୍କ ନେଇଯିବ ।'

ତାହାର ପ୍ରତ୍ୟେକଟି କଥା ମନକୁ ତରଳାଇ ଦେଉଥିଲା । ସେଥିପାଇଁ ତା ପ୍ରତି ହେଉଥିବା ଅବାରିଆ ସନ୍ଦେହ ଭିତରେ ବି ତା ସେପେଇ ବରାଦ ହେଲା ବାବୁଘରେ ।

ଦିନଯାକ ଦେବରାଜ କଥା ପଡ଼ୁଛି । ସମସ୍ତଙ୍କର ଚିନ୍ତା ଯେ ଦେବରାଜ ଯାଉ । ତା ପ୍ରତି ମମତା ଲାଗି ଅସୁଚି । ମୂଳରୁ ସନ୍ଦେହ ହୋଇଥିଲା, ତାକୁ ରଖି ସତକୁ ସତ ଯଦି କିଛି ବିପତ୍ତି ହୁଏ ତା'ହେଲେ ସବୁ ସମୟକୁ ମନରେ ଅନୁତାପ ରହିଯିବ ।

ସମସ୍ତେ ଗୃହିଁକର ବାକର ଖାଇସାରିଲା ବେଳେ ଦିନ ଦ'ଟା ହୋଇଯାଇଥିଲା । ଗୃକର ଗଲା ଦେବରାଜକୁ ଡାକିବା ପାଇଁ ।

ଦେବରାଜ କାମ ଶେଷ କରିବ କିନ୍ତୁ ଖାଇବାପାଇଁ ଆସିଲା ନାହିଁ କାରଣ ବାବୁଘରୁ ଚାକର ଯାଇନାହିଁ ।

ତାର ଏଇ ଅସ୍ୱାଭାବିକ କାମ ଅନ୍ତରରେ ସନ୍ଦେହ ଆଣିଲା । ମୂଲିଆ ତ ମାଗି ଆସେ—ଆଜି ଦେବରାଜ କିପରି ଖୋଜୁଚି ।

ସେ ସତରେ ଚୋର କି ?

ଦେବରାଜ ସେଠି ବାବୁଙ୍କର ସେଇ ବଡ଼ଘରର ଜଡ଼ାକିଅଙ୍କଠାରୁ ମାଗି ଦି'ଟା ଭାତ ଖାଇ ଦେଇଥିଲା । ଚାକରକୁ କହିଥିଲା ଯେ, କାମ ସାରି ସେ ଯାଇ ତାହାର ଭାତ ଖାଇଦେଇ ଶୋଇପଡ଼ିବ ।

ସନ୍ଦେହୀ ପରିବାରଟିରେ ପୁଣି ବିଚାର ହେଲା ଏଇ ଦେବରାଜ କଣ ମୂର୍ଖ ?...ଓଲୁ । ସେ ସନ୍ଧ୍ୟାବେଳେ ଆସି ଖାଇବ... ..ସେ ଶୋଇବ......ସେ କଣ ଚୋରି ପାଇଁ ଫାନ୍ଦ ପାରୁଚି ?

ତଥାପି ଦୁଇ ମତ । ସେ ଯଦି ଚୋର ନ ହୋଇଥାଏ ତାହାହେଲେ ତାକୁ ଅନ୍ୟାୟ କରାହେଲା ତ ।

ଦେବରାଜ ଆସି ଖାଇଲା । ସେ କହିଲା, ଅନେକ ଘାସ ହୋଇଥିଲା ଯେ ଭାବିଥିଲି ନେଇ ଆସିଥାନ୍ତି ଗାଈଙ୍କ ପାଇଁ, ଖାଲି ଖଣ୍ଡେ ରସି ମିଳିଥିଲେ... ।

'ଏଁ ରସି'...ତାହାହେଲେ ଏଇଟା କ'ଣ ଖୋଲିବଟା ଆଉ ଚୋର । ତଥାପି ତାକୁ ଖାଇବାକୁ ଦିଆହେଲା । ତାକୁ କହିଦିଆ ହେଲା ଯେ, ସେ ବାହାରେ କେଉଁଠି ଶୋଇ ।

ତହିଁ ଆରଦିନ ସକାଳେ ଦେବରାଜ ଆସି ପହଞ୍ଚିଲା ଆଗରୁ ବାବୁଘରେ କଥା ପଡ଼ିଛି ଯେ, ଦେବରାଜ ଆସିଲେ ତାହାକୁ କାମରେ ଲଗାହେବ ନାହିଁ କାରଣ ମମତା ବଢ଼ିଯାଉଛି ।

ଦେବରାଜ ଆସି ପହଞ୍ଚିଲା । ବାବୁଆଣୀ ବାବୁଙ୍କୁ କହିଲେ; ବାବୁ ଚାକରଙ୍କୁ କହିଲେ ଯେ, ଦେବରାଜକୁ ମନା କରି ଦିଆହେଉ । କିନ୍ତୁ ସମସ୍ତଙ୍କର ହୃଦୟରେ ଦୟା ।

କବାଟଟା ମେଲା କରି ଅତି ଚୁମ୍ବକରେ ତାହାକୁ ମନା କରିଦେଇ ପୁଣି କବାଟ ବନ୍ଦ କରିଦେଲା—ତାହାର ଅପତ୍ତି ଭାଳେ ଶୁଭିପିବ ।

ଦେବରାଜ ଗ୍ଲଲେ—କବାଟ ମେଲାକର ପଛରୁ ଦେଖିଲେ ଯେ ଦେବରାଜ ଧୀରେ ଧୀରେ ଗ୍ଲଲୁଛ ଅଗକୁ ।

ଏଣେ ବାବୁଘରେ କଥାପଡ଼ିଲା, ବାବୁ ସ୍ତ୍ରୀ ପିଲାଙ୍କୁ ଡାକି କହିଲେ 'ଭାଗ୍ୟକୁ ପରି ଶକ୍ତି ନାହିଁ—ଦେଇ ଶକ୍ତି ରଖିଥାଅ । ଦିନ ଖରାପ ଅସିଲେ ଏମିତି କରିବାକୁ କାମଟିଏ ବି ମିଳେ ନାହିଁ । ରଖିଲା ଲୋକ ବି ରଖେ ନାହିଁ । ଏଇଟି ଆମେ ତାକୁ ରଖିବାକୁ ଗ୍ଲହିଁଥିଲେ, ତା କାମ ବଦଳରେ ତାକୁ ଖୋରାକ ଦେବାକୁ ବାହାରିଥିଲେ, ଅଜ ଦୁଇ ଦିନର ମୂଲ ଦେଲେ ତଥାପି ତାହାକୁ ଛାଡ଼ିବାକୁ ହେଲା ତ ।'

ଦେବରାଜ ଅଜ ଫେରିନାହିଁ—



# ପଟୁଆର

## ( ଏକ )

ମେନନ୍ ୟୁନିଭର୍ସିଟି ହଷ୍ଟେଲରେ ଥାଏ । ମଣିଷ ଭାରି ଭଲ୍ କାହାର ମନରେ ଆଘାତ ଦିଏ ନାହିଁ । ନିଜର ଧନ୍ଦାରେ ଥାଏ ମଉଜୀ ସ୍ୱଭାବ—ଧନୀ ବୋଲି ଅହଂକାର ନାହିଁ । ନିଜର ମାନ ନିଜେ ରଖେ । ବନ୍ଧୁମାନଙ୍କ ସାଥିରେ ବେଳ କାଟିଦିଏ । କାହାର ଅନିଷ୍ଟ ଚିନ୍ତା କରେ ନାହିଁ ।

ଦେଖିବାକୁ ସୁନ୍ଦର । ସ୍ୱାସ୍ଥ୍ୟ ଭଲ—ପୋଷାକ ପହରଣ ଛୁଟ-ଫଗଡ଼ । ବଡ଼ ଲୋକର ପିଲା । ବାପାର ଗୁରୁଭାଇରେ ଗୋଟିଏ ପୁଅ । ଭଲରେ ବଢ଼ି ଆସିଛି ।

ମାସଯାକ ତାହାର ସାଙ୍ଗେ ସାଙ୍ଗେ ଅନେକ ପିଲା ରହୁଥାନ୍ତି । ମେନନ୍‌ର ଘରୁ ତିନ ଗୁଣ୍ଡାନ୍ତରେ ଟଙ୍କା ଆସେ । ଯେତେଥର ଲେଖିଲେ ବି ଆସିବ । ଯାହା ଲେଖିଲେ ବି ଆସିବ । ମେନନ୍

ଯେତେ ଖର୍ଚ୍ଚକଲେ ବି ଘରେ କେହି ସେକଥା ପଚାରିବେ ନାହିଁ । ଘରେ ତାହାର ବାପା ମା, ଦାଦା ଖୁଡ଼ୀ ସମସ୍ତେ ଜାଣନ୍ତି ମେନନ୍ ଟିକିଏ ମଜଳିସରେ ରହେ, ସାଙ୍ଗସାଥିଙ୍କ ପାଇଁ ଅନେକ ପଇସା ଖର୍ଚ୍ଚ କରିଦିଏ । ତେବେ ବି ସେ ଭାରି ଟେହ୍ଲା । ଘରେ ବହୁତ ସମ୍ପତ୍ତି । ଗୁରୁଭାଇରେ ବି ପିଲା ଖୁବ୍ କମ୍ । ପୁଅ ହୋଇ ଗୋଟିଏ । ସେ ସମସ୍ତଙ୍କର ସମ୍ପତ୍ତି ଭୋଗ କରିବ । ଭଲ ପଢ଼ୁ ନ ପଢ଼ୁ ଯୋଗ୍ୟ ହୋଇଗଲେ ସେମାନେ ଖୁସି ।

ତେଇଶି ବର୍ଷ ବୟସ ହେଲା । ଦେଖିଲେ ଆଖି ବନ୍ଧୁଯାଏ । ଇଞ୍ଜିନିୟରିଂ କଲେଜର ତୃତୀୟ ବର୍ଷର ଶ୍ରେଣୀରେ ପଢ଼େ । ଭଲ ପଢ଼େ ନାହିଁ । ଆ[illegible]ଇନି କ୍ଲାସ୍‌ରେ ବର୍ଷେ ବର୍ଷେ ରହି ଗର୍ଷକର ପଢ଼ାକୁ ଦୁଇବର୍ଷରେ ଶେଷ କରିଥିଲା । ଟିକ୍ ହେଉ ଭୁଲ ହେଉ, ଘରେ କେହି ସେ କଥା କହନ୍ତି ନାହିଁ ।

ଭଲ ପଢ଼ୁନାହିଁ ବୋଲି ତାହାର ସାଙ୍ଗସାଥି ତାହାକୁ ଅନାଦର କରନ୍ତି ନାହିଁ କାରଣ ସେ ଧନୀ—କୃପଣ ନୁହେଁ । ସେଥିପାଇଁ ସେ ଘରେ ବି ଶାନ୍ତି ପାଏନାହିଁ କାରଣ ସେ ଟେହ୍ଲା ।

( ଦୁଇ )

ବର୍ଷକେ ଥରେ କଲେଜର ବୋର୍ଡ଼ିଂରେ ଗୋଟିଏ ଭୋଟ୍-ଲୀଳା ଚାଲେ । ସେତେବେଳେ ବୋର୍ଡ଼ିଂ ଟିକ୍ ଭୋଟ ଲଢ଼େଇ ପରି ସରଗରମ ରହେ । କାନ୍ଥବାଡ଼ରେ ଭୋଟ ଦେବାପାଇଁ ନାଲି ନେଳି କଳା ଅକ୍ଷରରେ ବଡ଼ ବଡ଼ ଲେଖାସବୁ ମାରିଥାଏ । ମେନନ୍ ବାବୁ ପ୍ରତିଥର ଠିଆ ହୁଅନ୍ତି—ବୋର୍ଡ଼ିଂରେ କିଛି ଗୋଟାଏ ହେବାପାଇଁ । ତାଙ୍କଠୁଁ ଖାଇପିଇ ଭୋଟ ଦେଲାବେଳକୁ ସାଙ୍ଗମାନେ ଅନ୍ୟଆଡ଼େ ଚାଲିଯାନ୍ତି । ମେନନ୍ ରାଗେ କିନ୍ତୁ ମନରେ ସେ ରୋଷ ରଖେ ନାହିଁ । ପୁଣି ବନ୍ଧୁମାନେ ଲାଗି ରହନ୍ତି । ମେନନ୍ ସେ କଥା ଭୁଲିଯାଏ ।

ଅନେକ କଥା ମେନନ୍ ଭୁଲିଯାଉଛି । ତାହାର କୋଟବମିଜ୍, ଲୁଗା, ପେନ୍‌ସିଲ୍, ବହି, କଲମ କେତେଲୋକଙ୍କ ପାଖରେ ରହିଲାଣି, ଫେରୁନାହିଁ । ମାଗିଲେ କିଏ କହେ ହଜିଲା; କିଏ କହେ ମତେ ଏଇଟା ଉପହାର ଦିଅନ୍ତୁ ମେନନ୍‌ବାବୁ—ଅପଣଙ୍କୁ ମନେ ରଖିବି । ମେନନ୍ ସେଇ ତାଲିକା ରଖେ ନାହିଁ । ତାହାର ଯାହା ଦରକାର ସେ କିଣିନିଏ । ଯାହାର ଯାହା ଦରକାର ପଡ଼େ, ସେ ମେନନ୍‌ଠାରୁ ନେଇଯାଏ । ମେନନ୍ ଏମିତି ଖୁଆଇବା, ପିଆଇବା, ଜିନିସ ଦେବାରେ ଅନେକ ପଇସା ଖର୍ଚ୍ଚ କରେ ।

ତାହାର ପରିବାରର ସମସ୍ତଙ୍କ ଆଖି ମେନନ୍ ଉପରେ । ମେନନ୍‌ର ଦୃଷ୍ଟି ବେଶି ତାହାର ବନ୍ଧୁମାନଙ୍କ ଉପରେ । ସିନେମା ଦେଖିବାକୁ ପଇସା ନ ଥିଲେ ମେନନ୍‌ବାବୁ ତାଙ୍କୁ ନେଇଯିବେ । ସେଥିପାଇଁ ମେନନ୍‌ବାବୁ ବି ସାଙ୍ଗରେ ଯିବେ । ଏମିତିରେ ମେନନ୍ ଯେତେ ପଇସା ଖର୍ଚ୍ଚ କରେ ତହିଁରୁ ଅଧିକ ସମୟ ନଷ୍ଟ କରେ । କେଉଁଦିନ ବି ସେ ସନ୍ଧ୍ୟାରେ ପଢ଼ି ପାରେନାହିଁ । କାରଣ ବନ୍ଧୁମାନଙ୍କର ଉତ୍ପାତ ।

ପଢ଼ିଲାବେଳେ ଏହି ବନ୍ଧୁମାନଙ୍କ ପାଇଁ ସବୁ ଠିକ ହୁଏ । ସୁବିଧା ପାଇଲେ ସେମାନେ ଟୋକେ ଗୋଡ଼େ ଲାଗି ରହିଥାନ୍ତି । ଖୋସାମଦ କରି କଥା କହି ପିଲାଟିମାନଙ୍କ ପାଖରେ ଯାହା ଅଛି ସେତକ ଉଡ଼େଇ ଦେବାରେ ମୋଟେ ହେଳା କରନ୍ତି ନାହିଁ । ପଇସା ପାଖରେ ଥିଲେ ବନ୍ଧୁମାନଙ୍କୁ ଛାଡ଼ିବାପାଇଁ ସୁବିଧା ବାହି ମିଳେ ନାହିଁ ।

ମେନନ୍ ସେମାନଙ୍କୁ ମୋଟେ ଛାଡ଼ିପାରୁ ନ ଥିଲା । ପଢ଼ୁଆ ସାଥିମାନଙ୍କ ମଧ୍ୟରେ ଭଲ କେଉଜଣ, ଅପଣ ସାଥିଁକା କିଏ, ହିଂସିକା କିଏ, ସେ କିଛି ଜାଣେନାହିଁ । ତାହାକୁ ଦେଖିଲେ ସମସ୍ତଙ୍କ ମୁହଁରେ ହସ ଉଠେ । ମେନନ୍‌ବାବୁ କ'ଣ ଦେବେ ?

ସାଙ୍ଗେ ସାଙ୍ଗେ ଲୋକ ଗୃଲଥାନ୍ତି । ମେନନ୍ ତାହାର ଖର୍ଚ୍ଚରେ ଲଗିଥାଏ ।

( ତିନି )

ପରୀକ୍ଷାରେ ଥରେ ଫେଲ୍ ହେଲେ ମେନନ୍ ଘରକୁ ନ ଯାଇ ବୋର୍ଡ଼ିଂରେ ରହେ । ଘରକୁ ଲେଖିଦିଏ ସେ ଛୁଟିରେ ରହି ପଢ଼ିବ; ଶେଷ ପରୀକ୍ଷାଟା ଖରାପ ହୋଇଗଲା ।

ଘରୁ ମା' ଝୁଡ଼ୀଅଦ ଚିଠି ଲେଖନ୍ତି ମେନନ୍‌କୁ ଶୀଘ୍ର ଫେରିଯିବା ପାଇଁ । ପଢ଼ି ପଢ଼ି ଦେହ ତାହାର ଖରାପ ହୋଇଯାଇଛି ବୋଲି ସେମାନେ ଅନ୍ୟ ପିଲାଙ୍କର ଚିଠିରୁ ଜାଣି ସାରିଲେଣି । ମେନନ୍‌ର ରୋଜଗାର ଦରକାର ନାହିଁ । ଯାହା ଘରେ ଅଛି ସେତକ ବସି ଥୋଇ ଖାଇଲେ ମେନନ୍‌ର ଜୀବନଟା କଟିଯିବ । ପଢ଼ୁଥିଲା ଭଲ ନହେଲେ କିଛି ଯାଏଆସେ ନାହିଁ ।

ମେନନ୍ ଚିଠି ପାଇ ସବୁ ବନ୍ଧୁଙ୍କୁ ଥରେ ଥରେ ପଢ଼େଇ ଦିଏ । ଫେଲ୍ ହୋଇଗଲା । ତେବେ ବି ମା' ଝୁଡ଼ୀ ଅଦ ଲେଖିଛନ୍ତି ମେନନ୍ ପଢ଼ି ପଢ଼ି ଶୁଖିଯାଇଛି । ଏଣେ ମେନନ୍ ଚକ୍‌କଣୀ ହେଉଥାଏ ଖାଇପିଇ । ବନ୍ଧୁମାନେ ଉପଦେଶ ଦିଅନ୍ତି ଯେ ରେଲରେ ଗଲାବେଳେ ଦୁଇ ଦିନ ମୁଣ୍ଡକୁ ନୁଖୁରା ରଖିଲେ, ଦାଢ଼ି ଖିଅର ନ ହେଲେ ଘରେ ପହଞ୍ଚିଲାବେଳକୁ ମେନନ୍ ରୋଗା ଦିଶିବ । କେହି କିଛି କହିବେ ନାହିଁ ।

ମେନନ୍ ଖୁସି ହୋଇଯାଏ । ପରୀକ୍ଷାଟା ଖରାପ ହୋଇଥିଲା ବୋଲି ସେ ବଡ଼ ମନକଷ୍ଟରେ ଥିଲା । ପରୀକ୍ଷା ଫଳ ନ ବାହାରିଲେ ସେ ଯିବ ନାହିଁ ବୋଲି ଲେଖି ଦେଇଥିଲା । ଯେତେ ତାଗିଦା ଚିଠି ଆସିଲେ ବି ସେ ଯାଉ ନ ଥିଲା ।

ପରୀକ୍ଷାଫଳ ବାହାରିବାବେଳେ ବେଶି ଡେର ହୁଏନାହିଁ । ସେଥିପାଇଁ ମେନନ୍ ତାହାର ପରୀକ୍ଷା କାମ ସାରି ଯାଇ ଯାଇ ଫଳ ବାହାରି ଯାଉଅଛି । ପାସ୍ କରିଥିଲେ ବଡ଼ ବିଗ୍ବିଜୟୀ ପରି ସେ ଘରକୁ ଫେରେ । ଅଳ୍ପ କେଇଦିନ ପଢ଼ି ପାସ୍ କଲି ବୋଲି ଗୋଟାଏ ଲମ୍ବା ବଖାଣ କାଢ଼େ । ଘରେ ସମସ୍ତେ କହନ୍ତି, ମେନନ୍ ଭାରି ବୁଦ୍ଧିଆ । ସେ କେଇଦିନ ଯେ ଘରେ ଜହ୍ନାତିଆ ହୁଏ । ପରୀକ୍ଷାକୁ ସେ ଜିଣିଛି ।

ଫେଲ୍ ହୋଇଗଲେ ସେ ଘରେ ମୁହଁ ଶୁଖେଇ ବସେ । ସମସ୍ତେ ତାହାକୁ ଉତ୍ସାହ ଦେବାରେ ଲାଗିପଡ଼ନ୍ତି । ମେନନ୍‌ର ଭାରି ଯତ୍ନ ନିଆଯାଏ । ମେନନ୍ ଭଳି ବୁଦ୍ଧିଆ ପିଲା ଫେଲ୍ ହୋଇଗଲା ବୋଲି କହନ୍ତି । ଦୋଷ ହୁଏ ୟୁନିଭର୍ସିଟିର । ସେଠିକାର ମାଷ୍ଟରମାନେ ତାଙ୍କ ମେନନ୍‌କୁ ଚିହ୍ନିପାରୁ ନାହାନ୍ତି । ସେମାନେ ଭଲକରି ମେନନ୍ ଖାତା ଦେଖି ନାହାନ୍ତି ବୋଧହୁଏ । ମେନନ୍ କହେ ସେ ଗୋଟାଏ ମକଦ୍ଦମା କରି ସେମାନଙ୍କୁ ସିଧା କରିଦେବ । ସେ କେମିତି ଫେଲ୍ ହେଲା ?

ସେଥିପାଇଁ ଫେଲ୍ ହେଲେ କି ପାସ୍ କଲେ ମେନନ୍ ଘରେ ଏକାପରି ପୂଜାପାଏ । ସେ ଭାରି ପଢ଼ଣ୍ଟି—ଭାରି ବୁଦ୍ଧିଆ । ଦୋଷ ଭିତରେ ଏତିକି ଯେ ମେନନ୍ ଖର୍ଚ୍ଚ କରେ ଟିକିଏ ବେଶି । ସେଥିରେ ମେନନ୍‌ର ଦୋଷ ହୁଏନାହିଁ । ଦୋଷ ହୁଏ ସେହି ତାଂଗଲିଆ ପିଲାଗୁଡ଼ାଙ୍କର । ସେମାନେ ତାଙ୍କର ମେନନ୍‌କୁ ଠକି ସବୁ ଖାଇଯାଉଛନ୍ତି ।

ମେନନ୍‌ର କେଉଁଠି କିଛି ଦୋଷ ଜଣାପଡ଼େ ନାହିଁ । କେହି ବାଛି ପାରନ୍ତି ନାହିଁ । କାରଣ ସେ ଧନୀ ଓ ଝଲଅଣ ।

ମେନନ୍‌ର ଯେ କିଛି ଦୋଷ ଅଛି ସେତକ ମେନନ୍ ମଧ୍ୟ ନିଜେ ଭାବିପାରେ ନାହିଁ । ପରୀକ୍ଷାରେ ଫେଲ୍ ହେବା ତାହାର ହାତ କଥା ନୁହେଁ । ପୂରା ବହି ମନେ ରଖିବା ଓ ଠିକ୍‌କରି ପରୀକ୍ଷାରେ ଲେଖିବା ସମ୍ଭବ ନୁହେଁ । ଯଦି ବହିଯାକର ଏମୁଣ୍ଡରୁ ସେମୁଣ୍ଡଯାଏ ଗୋଟିଅଡୁ ସବୁପ୍ରକାରର ପ୍ରଶ୍ନ ପଡ଼ନ୍ତା, ତାହାହେଲେ କ'ଣ କେହି ପାସ୍ କରିପାରନ୍ତେ—ବଡ଼ ବଡ଼ ପରୀକ୍ଷାମାନଙ୍କରେ ?

ତାହାର ଦୁର୍ଭାଗ୍ୟ ଯେ ସେ ଅଳ୍ପ ପଢ଼େ । ତାହାର କୈଫିୟତ ସେ ମନକୁ ମନ ଦିଏ ଯେ ବୁଦ୍ଧିଆ ଲୋକ ବୋଲି ସେ ଅଳ୍ପ ପଢ଼େ । ତାହାର ଧାରଣା ଯେ ବୁଦ୍ଧିମାନ ଲୋକ ଅଳ୍ପରେ ସବୁ ଭାବ ଛୁଣ୍ଡେଇ ଦିଅନ୍ତି । ତାହାର ଅର୍ଥ ଯେ କରେ କି ବୁଦ୍ଧିମାନ୍ ପିଲାମାନେ ଅଳ୍ପ ସମୟ ଓ ବହିର ଠାଏ ଠାଏ ବାଛି ପଢ଼ନ୍ତି । ମେନନ୍ ସେମିତି ପଢ଼େ—କାରଣ ସେ ଜଣେ ବୁଦ୍ଧିମାନ୍ ।

ମେନନ୍‌ଠାରୁ ମାଡ଼ପିଠି ଖାଇଲାବେଳେ ତାହାର ବନ୍ଧୁମାନେ ମେନନ୍‌ର ଏହିପ୍ରକାରର ମତକୁ ସମର୍ଥନ କରନ୍ତି । ଏକାଠି ହୋଇ ମଜଲିସ କଲାବେଳେ ସେମାନେ ପରିଶ୍ରମୀ ପିଲାଙ୍କୁ ଘୋଷା ବଳଦ ବୋଲି କହି ଉପହାସ କରନ୍ତି । ପଢ଼ିବା ପିଲାଙ୍କର ପଢ଼ାରେ ଗୋଳମାଳ କରନ୍ତି । ସେମାନଙ୍କୁ ନିଜର ଉଦାହରଣ ଗ୍ରହଣ କରିବାକୁ ଉପଦେଶ ଦିଅନ୍ତି ।

( ଚାରି )

ବର୍ଷଯାକ କେବେ ପଢ଼ିବା କଥା ମେନନ୍‌କୁ ଜଣାନାହିଁ । ସକାଳେ ଉଠୁ ଉଠୁ ଡେରି ହୁଏ । ଉଠି କୋଠରୀ ଭିତରେ ଜଳଖିଆ ଅପ୍ରୋଜନ ଲାଗେ । ଚା' ଜଳଖିଆ ତ ଥିବ ଚାଲିଥାଏ । ଚା' ଦୋକାନ ପରି ଅନେକ ପିଲା ସେହି କୋଠରୀଟି ବ୍ୟବହାର କରନ୍ତି । ଯାହାର

ଦରଜାର ଢ଼ୁଏ ସେଠି ଅସି ମଜ୍‌ଲିଅ, ରସିକ୍ରିଅ, ଠେକାଠେକ କଥା ଗୃହପଦେ କହୁ ଗୃ’ ଖାଇ ଗୃଲନ୍ତ ।

ମେନନ୍ ତାହାର ନିତ୍ୟକର୍ମରେ ଲଗିଯାଏ । ପ୍ରତ୍ୟେକଟି କଥା ସେମିତ ଲମ୍ପିପାଏ । ଖୋଜିଲାବେଳେ ସେ ସାବୁନ, ଖୁର, ତଉଲିଅ, ତେଲ କିଛି ପାଏନାହିଁ । ପାଖ କୋଠରିମାନଙ୍କୁ ସେମାନେ ଗୃଲି ଯାଇଥାନ୍ତି । ମେନନ୍ ଭାରି ରାଗେ—ଜିନିଷ ଉପରେ, ଲୋକଙ୍କ ଉପରେ ନୁହେଁ ।

ପିଲାଙ୍କ ଉପରେ ରାଗିଲେ ସେମାନେ ଅପମାନ ପାଇଲେ ବୋଲି ମନେ କରିବେ । ଆଉ ମେନନ୍ ସାଙ୍ଗରେ କଥାଭାଷା କରିବେ ନାହିଁ । କେତେଥର କେଇଜଣଙ୍କୁ କହି ଦେଇଥିଲା କି ତାହାକୁ ନ ପଗ୍ଗୃରି ସେମାନେ ତାହାର ଜିନିଷ ନେବେ ନାହିଁ । ସେଥିରେ ସେମାନେ ଭାରି ଅଭିମାନ କଲେ ମେନନ୍ ଉପରେ— ମେନନ୍ ସେମାନଙ୍କୁ ଚୋର ବୋଲି ଭାବିଲା ବୋଲି ।

ତ’ପରେ ସେ ଯାଏ କଲେଜକୁ । କ୍ଲାସ୍‌ରେ ପଛରେ ବସି ବାକେ ବହି ପଢ଼େ ; ମନଦେଇ ଶୁଣୁଥିବା ପିଲାମାନଙ୍କୁ ଥଟ୍ଟା କରେ, ନଇଲେ ବସି ଢୁଳାଏ । ଏମିତ କିଛି ସମୟ ବସିଲେ ବି ମେନନ୍ ବସି କ୍ଲାନ୍ତ ହୋଇପଡ଼େ ।

କ୍ଲାସ୍ ସରିଲେ ସେ ତାହାର ସାଙ୍ଗମାନଙ୍କୁ ପଢ଼ାକଥା ବୁଝାଏ । ମାଷ୍ଟ୍ରମାନେ ଭଲ ପଢ଼େଇ ପାରୁ ନାହାନ୍ତି । ସେଥିପାଇଁ କ୍ଲାସ୍‌ରେ ଏତେ ଗୋଳମାଳ ହେଉଛି । ଭଲକରି ପଢ଼ାଇ ଜାଣିଲେ ସିନେମା ଦେଖିଲା ପରି ଖୁସି ଲଗନ୍ତା । ନିଦ ଲଗନ୍ତା ନାହିଁ କି ଗୋଳମାଳ କରିବାକୁ ଇଚ୍ଛା ହୁଅନ୍ତା ନାହିଁ ।

ଏମିତ କଦର୍ଯ୍ୟଭାବରେ ପଢ଼ାନ୍ତୁଏ ବୋଲି ମେନନ୍ ଆଉ ତାହାର ଦଳର ସମସ୍ତେ ଏକମତ । ଖରାପ ପଢ଼ା ହେଉଛି ବୋଲି

ଗୁଣିଲେ ବି କ୍ଲାନ୍ତି ଆସୁଛି । ସେହି କ୍ଲାନ୍ତି ଦୂର କରିବାକୁ ବହୁତ ପ୍ରକାରର ଉପଚାର ଦରକାର ହୁଏ । ଏହି ପଢ଼ାଇବାର ରୀତି ଭଲ-ନୁହେଁ ବୋଲି ମେନନ୍‌ବାବୁ ଫେଲ୍ ହୋଇଚାଲେ । ଭଲ ପଢ଼ା ଥରେ ଅଧ୍ୟାୟ ଗୁଣି ଦେଉଥିଲେ ତ ମନ ଭିତରେ ଛପା ହୋଇର ବସିଲ ପରି ବସିଯାଆନ୍ତା । ପରୀକ୍ଷାବେଳେ କାହିଁକି ଖରାପ ହୁଅନ୍ତା ?

ଏହି ପ୍ରକାରର ପଢ଼ାପଢ଼ି ମେନନ୍‌ର ହୁଏ । ତା'ପରେ ସେ ସ୍ୱାସ୍ଥ୍ୟ ଠିକ୍ ରଖିବାକୁ ଖେଳପଡ଼ିଆକୁ ଚାଲିଯାଆନ୍ତି । ମନଇଚ୍ଛା ଖେଳନ୍ତି । ଯେତେ ଅଡ଼ୁଆ କାମସବୁ କରନ୍ତି । ସେ ମନେ କରନ୍ତି ଯେ ଖେଳ ପଡ଼ିଆଟା ତାଙ୍କର ନିଜର । ସେଠି ଯେତେ ଖେଳାଳି ସେମାନେ ମେନନ୍ ବାବୁଙ୍କର ଆଶ୍ରିତ ।

ଝୁଆର ପିଅର ପିଲାଏ ଏତେ ଭଲପାଇଥାନ୍ତି ଯେ ମେନନ୍ ବାବୁଙ୍କର ଖେଳଟା ଭଲ ନୁହେଁ ବୋଲି କେହି କହନ୍ତି ନାହିଁ । ମେନନ୍ ବାବୁ କଲେଜ୍ ଟିମ୍‌ରେ ଖେଳନ୍ତି । ସେହି ବିଭାଗରେ ସେ ଜଣେ ବଡ଼ ବିଦ୍ୱାନ୍ ବୋଲି ନିଜକୁ ମନେ କରନ୍ତି ।

( ପାଞ୍ଚ )

ମେନନ୍ ଖେଳିବାର ଭାରି କ୍ଲାନ୍ତ ହୋଇପଡ଼େ । ସନ୍ଧ୍ୟା-ବେଳେ ସିନେମା ଦେଖି ସେହି କ୍ଲାନ୍ତି ଦୂର କରେ ନଇଲେ ଶୋଇ-ପଡ଼େ । ପଢ଼ିବାକୁ ବେଳ କାହିଁ ?

ସର୍ପ ସକାଳୁ ଉଠି ହଷ୍ଟେଲକୁ ଅକ ଶରେ ବୁଡ଼ି ଯାଆନ୍ତି । ସକାଳେ ପୁଣି ଉଠି ଥାଆନ୍ତି । ବଡ଼ଲୋକ ପିଲା ବୋଲି ମେନନ୍‌କୁ ପଢ଼ିବାକୁ ବେଳ ମିଳେ ନାହିଁ । ପାଖ କୋଠରୀରେ ଥିବା ଗରିବ ପିଲାଏ ଖାଇବା, ପିନ୍ଧିବା ଓ ବହିର ଅଭାବରେ ବସି ସେହି ସମୟଟିକ ପଢ଼ାରେ ଲଗାନ୍ତି । ସେମାନେ ଖେଳିବାକୁ କି ଖେଳ ଦେଖିବାକୁ ବିଶେଷ ସୁବିଧା ପାଆନ୍ତି ନାହିଁ । ଯେତେବେଳେ ବି ମିଳେ

ସେମାନେ ସେତିକ ଭଲ କରି ଉପଭୋଗ କରି ପାରନ୍ତି ନାହିଁ । ମୁଣ୍ଡ ଉପରେ ଭାରି ବୋଝ ପରି ଦୁଃଖ ଦାରିଦ୍ର୍ୟ ମାଡ଼ି ଧରିଥାଏ ।

ଧନୀ ପିଲା ମେନନ୍‌କୁ ସମସ୍ତ ମିଳେ ନାହିଁ । ଦାନଯାକ ଖିଆ ଖୁଆ, ଖେଳାବୁଲା ତାହାର ଜୀବିକା । ତଥାପି କେହି ତାହାକୁ ଈର୍ଷା କରନ୍ତି ନାହିଁ । ସମସ୍ତଙ୍କ ପାଇଁ ମେନନ୍ । କାହାରି ଦେହ ଖରାପ ହେଲା—ଔଷଧ କି ଫଳର ଅଭାବ ଘଟୁଛି । କିଏ ପରୀକ୍ଷା ଫିସ୍ ଦେଇ ପାରୁନାହିଁ—ଧାର ମିଳୁ ନ ଥିଲା ବୋଲି । କିଏ ପଢ଼ି ପାରୁ-ନାହିଁ ଖାତା ବହିର ଅଭାବ ଯୋଗୁଁ । ମେନନ୍ ସେତିକ ତୁଟାଇ ନିଏ । ଧନୀ ଗୋଟିଏ ଅଧେ ନ ଥିଲେ ଏତିକ କି ସମ୍ଭବ କାହୁଁ ହୋଇ ପାରନ୍ତା ?

ପଢ଼ାପିଲାଙ୍କ ଭିତରେ ଧନ ଜାତିବିଭାଗ ଅଛିଦିଏ । ବଡ଼-ଲୋକଙ୍କ ପିଲାଏ ସେହି ବଡ଼ଲୋକିଆ ପିଲାଙ୍କ ସାଙ୍ଗରେ ବୁଲନ୍ତି । ଗରିବମାନେ ଅଲଗା ହୋଇଯାଆନ୍ତି । ମେନନ୍ ଏହି ଜାତି-ବିଭାଗକୁ ଘୃଣା କରେ । ସେଥିପାଇଁ ଧନୀ, ଦରିଦ୍ର ସମସ୍ତେ ମେନନ୍‌ର ଚୋହିପଟଣ ହୋଇଥାଅନ୍ତି ।

ହୃଦୟବାନ୍ ଲୋକ ସଂସାରର ସମସ୍ତଙ୍କୁ ଗୁଣ ଦୋଷ ବିଗୁର ନ କରି ନିଜର କରିନିଏ ଓ ନିଜର ବୋଲି ଭାବେ ।

( ଛଅ )

ପ୍ରଥମ ଦୁଇଟି ଶ୍ରେଣୀରେ ଥରେ ଲେଖାଏଁ ଫେଲ୍ ହୋଇ ମେନନ୍ ତୃତୀୟ ଶ୍ରେଣୀକୁ ଉଠିଥିଲା । ତୃତୀୟ ଶ୍ରେଣୀରେ ଲାଗେ ଲାଗେ ଦୁଇ ବର୍ଷ ହୋଇଗଲାଣି । ତୃତୀୟ ବର୍ଷକୁ ଗୁଲୁଛୁ । ମେନନ୍‌ର ସେଥର ପାସ୍ କରିବା ଭାରି ଦରକାର । ସେହି କ୍ଲାସ୍‌ଟା ପାସ୍ କରି-ଗଲେ ସେ ବିଭା ହେବ ବୋଲି କହିଥିଲା । ଝିଅ ଠିକ୍ ହୋଇଛୁ । ଦୁଇବର୍ଷ ହେଲାଣି ସେମାନେ ଅପେକ୍ଷା କରି ବସିଛନ୍ତି । ମେନନ୍

ପଢ଼େ କଥାରେ ଅଛାଟରେ କହିଲେ ଭଲ କହି ଦେଇଥିଲେ ମେ ତୃତୀୟ ଶ୍ରେଣୀଟା ପାସ୍ କରିଗଲେ ହିଁ ଭଲ ହେବ । ସେତକ ହୋଇ-ପାରିଲା ନାହିଁ ।

ତାହାର ମା ଭଗବାନଙ୍କ ପ୍ରତି ବ୍ୟସ୍ତ । ବିଗ୍ରହର ହୋଇଯାଉ— ପରେ ପରୀକ୍ଷା କଣ ଦଅହୋଇ ପାରିବ ନାହିଁ । ମେନନ୍ ବୁଦ୍ଧିଆ-ପିଲା । ଥରେ ଅଧେ କଣ ଦୈବଦୁର୍ବିପାକରୁ ସେ ପାସ୍ କରିପାରି ନାହିଁ । ବିଗ୍ରହର ହୋଇଯାଉ ।

ତାହାର ସ୍ତ୍ରୀ'ର ଘରଲୋକେ ସେମିତି ବ୍ୟସ୍ତ ବାହା କରି-ଦେବା ପାଇଁ । ମେନନ୍ ନିଜେ କହି ଦେଇଥିଲା ବୋଲି ବାହା ହେବାକୁ ନାରାଜ ହେଉଛି । ପାସ୍ ନ କଲେ ବାହା ହେବ ନାହିଁ ବୋଲି ତାହାର ଜବାବ ଥିଲା । ପାସ୍ କରିପାରୁ ନାହିଁ ତ !

ମେନନ୍‌ର ବାପା ମେନନ୍‌କୁ ବୁଝାଇ ଚିଠି ଲେଖନ୍ତି । 'ମେନନ୍, ମୋର ଦୀର୍ଘଜୀବନର ଅଭିଜ୍ଞତାରୁ ଗୋଟିଏ କଥା ଶିଖିଛି । ଭଗବାନ୍ ସମସ୍ତଙ୍କୁ କୌଣସି ଗୋଟିଏ ବିଷୟରେ ଦୁଃଖ ଦେଇ-ଥାନ୍ତି । ସମସ୍ତେ ତାଙ୍କ ହାତରେ ନିଶ୍ଚୟ କଷ୍ଟ ପାଇବେ । ବେଶି ହେଉ, କମ ହେଉ, ଦୁଃଖ ସହିବାକୁ ପଡ଼ିବ ।......କେହି ଆଗରୁ ସେଇଟା ଭୋଗିଯାଏ ଆଉ କିଏ ପରେ ସେଇଟା ଭୋଗେ ।

ପରୀକ୍ଷାରେ ଏତେ ଥର ଫେଲ୍ ହେଲା ତଥାପି କାହାର ବିରକ୍ତି ନାହିଁ । ସାଙ୍ଗରେ ଆରମ୍ଭ କରିଥିବା ପିଲାମାନେ ପାସ୍ କରି ଚାକିରି ପାଇଗଲେଣି । କେହି କେହି ଘର ସଂସାର କରି ସୁଖରେ ଲାଗି-ଗଲେଣି । ବିଚରା ମେନନ୍ ଖାଲି ସେହି ତୃତୀୟ ବର୍ଷର କ୍ଳାସ୍‌ଟା ଉଚିଗଲେ ଭଲ ହେବ ଯେ ହେଉଥିଲେ ବିଧାତା ବାଧା ଦେଉଛନ୍ତି । ......ଉଃ, ପ୍ରତିବର୍ଷ ଏମିତି ବିଶ୍ୱବିଦ୍ୟାଳୟ ଗୋଟାଏ ଲେଖାଁ ପରୀକ୍ଷା ନ ନେଇଲେ କଣ ଏମିତି କ୍ଷତି ହୋଇଯାଆନ୍ତା ?

କୋଠରି କୋଠରି ବୁଲି ମେନନ୍ ବୁଝାଏ ସମସ୍ତଙ୍କୁ ତାହାର ମନ୍ଦଭାଗ୍ୟ କଥା । ପରୀକ୍ଷାଗୁଡ଼ାକ ତାହା ହାତରେ ଭାବ ବାଦ କରନ୍ତି । ସେ ଯାହା ଘୋଷିଥାଏ ସେତକ ଠିକ୍ ପରୀକ୍ଷାରେ ଆସିଯାଏ । ଅନ୍ୟମାନେ ଯାହା ପଢ଼ିଥାନ୍ତି ଠିକ୍ ସେଇଆ ପଡ଼େ ।

ପଢ଼ାପିଲାର ବଡ଼ ଶତ୍ରୁ ହେଲା ପରୀକ୍ଷା । ସେମିତି ଆଉ ଗୁଡ଼ିଏ ଶତ୍ରୁ ଥାଆନ୍ତି । ସେମାନେ ସେହି ଶତ୍ରୁମାନଙ୍କର ସ୍ରଷ୍ଟା । ଗୋଟିଏ ହେଲା ଯେ ପ୍ରଶ୍ନ ଦିଏ, ଆଉଟି ହେଲା ଯେ ପ୍ରଶ୍ନର ଉତ୍ତରସବୁ ପରୀକ୍ଷା କରେ । ଶେଷକୁ ହେଲା ବିଶ୍ୱବିଦ୍ୟାଳୟ । ସେମାନେ ସମସ୍ତଙ୍କୁ ପାସ୍ ନ କରାଇ ଯେ ଏଣୁତେଣୁ ଗୁଡ଼ିଏ ଛ' ପୁଞ୍ଜିଙ୍କୁ ଝୁଙ୍କି ଦିଅନ୍ତି, ସେଥିରେ କ'ଣ ଅବା ତାଙ୍କର ଲାଭ ?

ପରୀକ୍ଷାର ଫଳ କେତେ ଆଖି ଆଗରେ ଅଷାଢ଼ୁଆ କଳାମେଘ ଉଠାଇ ଆଣେ । ଆଖିରୁ ଝରଝର ହୋଇ ଲଗାଣ ବର୍ଷିଥାଏ । କାହାର ଦି' ଘଣ୍ଟା, କାହାର ବା ଦୁଇଦିନ କି ଦୁଇମାସ ।

ମେନନ୍ ଜୀବନରେ ଏମିତି ଦୁଃଖ ଅନେକଥର ପାର ହୋଇ-ଗଲାଣି କିନ୍ତୁ ଏଣିକି ତାହାକୁ ବାଧେ । ତାହାର ପରୀକ୍ଷାଫଳକୁ ଅଜଜଣେ ଅତି ଉତ୍କଣ୍ଠାରେ ଗୁହିଁ ବସିଥାଏ । ଦୂର ଦେଶର ଗାଁରେ ତାହାର ସ୍ତ୍ରୀ । ଫଳ ବାହାରିଲେ, ମେନନ୍ ପାସ୍ କଲେ ତାହାକୁ ଘରକୁ ଅଣିବ ।

ଫେଲ୍ ହୋଇଗଲେ ମେନନ୍‌ର ଛାତିରୁ କିଏ ଯେମିତି ଛେଣ୍ଡି ମାଂସ ବାହାର କରିଦିଏ । ତାହାର ଆଖିଆଗରେ ଦିଶେ ତାହାର ପତ୍ନୀଶତ ଗୋଟିଏ ଝିଅ । ସେ ବି ମନେ ମନେ ଭାଳେ ଭାବୁଥିବ, ମେନନ୍‌ଟା ମୂର୍ଖ ବୋଲି ।

( ସାତ )

ମେନନ୍‌ର ଖୁସିବାସିଆ ଜୀବନରେ ଅଳ୍ପ କେଇଟି ଘଟଣା ଘଟିଛି, ସେହିଗୁଡ଼ିକ ଖାଲି ପରୀକ୍ଷା । ପରୀକ୍ଷାଗୁଡ଼ିକ ମେନନ୍‌ର

କଉତୁକିଆ ଜୀବନରେ ବିଦ୍ରୂପ କରି ଠିଆ ହୋଇଯାଇଛନ୍ତି । ସେହିମାନେ ତାକୁ ଅକଳନ ଦୁଃଖ ଦେଇଛନ୍ତି ।

ତାହାର ଜୀବନରେ ବଡ଼ ଘଟଣା ହେଲା ବନ୍ଧୁ, ସାଙ୍ଗସାଥି । ପରୀକ୍ଷାରେ ସେ ଯେତେବେଳେ ଫେଲ୍ ହୁଏ ଓ ଅନ୍ୟ ବନ୍ଧୁମାନେ ପାସ୍ କରନ୍ତି, ତାହାର ଦଳ ଭାଙ୍ଗିଯାଏ । ପୁଣି ନୂଆ ଲୋକ ଆସନ୍ତି । ମେନନ୍ ତାହାର ଦଳଟିରେ ଠାଏଅଧେ ଭଙ୍ଗାରୁଜା କରିଦଏ । ଅଳ୍ପଥରେ ପରୀକ୍ଷା ସେତିକି ଓଲଟପାଲଟ କରିଦଏ ।

ବୟସ ଅନୁପାତରେ ମେନନ୍ କଅଁଳ ରହିଲା । ତାହାର ମୁହଁରେ ଏହି ଅଘାତର ଚିହ୍ନ ଫୁଟି ଦିଶେନାହିଁ । ପରୀକ୍ଷାଗୁଡ଼ାକ ପ୍ରତିବର୍ଷ ତାହାର ମୁହଁ ଉପରେ ଗୋଟିଏ ଅଦୃଶ୍ୟ ଗାରଦେଇ ଚାଲିଯାଆନ୍ତି । ଜୀବନଟା ଯେମିତି ପରୀକ୍ଷାରେ ହିଁ ଶେଷ ହୋଇଛି ।

ଶେଷକୁ ପରୀକ୍ଷାଗୁଡ଼ାକ ତାହାର ବିବାହରେ ବି ବାଧା-ଦେବାକୁ ବାହାରିଲେଣି । ମେନନ୍ ପ୍ରତିଜ୍ଞା କଲା ସେଥର ପରୀକ୍ଷାକୁ ପରାସ୍ତ କରିବ । ଦୋଳ ପୁନେଇ ପାରି ହୋଇଗଲେ ସେ ଏକାଥରକେ ପଢ଼ାରେ ଲାଗିଯିବ ।

ଦୋଳରେ ସେ କେଉଁ ପୋଷାକ ପିନ୍ଧି ରଙ୍ଗ ଖେଳିବ ଓ କାହା କାହା ଘରକୁ ରଙ୍ଗ ଖେଳିବାକୁ ଯିବ ତାହାର ତାଲିକାରେ ଲାଗିଥାଏ । ବଡ଼ ଲମ୍ବା ତାଲିକା—କେଉଁ କୋଠରୀର ଦୁଆରମୁହଁରେ ବେଶୀ ଉତ୍ପାତ ହେବ, କାହାର ମୁହଁ ଚିହ୍ନ କରିଦେବ, କାହାର ଲୁଗା ପୋଡ଼ାହେବ ଇତ୍ୟାଦି । ତାହାର ଭିତରେ ପରୀକ୍ଷା କଥା ଭାବି ସେ ଚମକି ପଡ଼େ । ପରୀକ୍ଷା ରହିଲା ଦେଢ଼ମାସ । ସେତିକରେ ଫେଲ୍ କଲେ ପୁଣି ବର୍ଷେ—ବାହାଘର ଗଡ଼ିଯିବ ଆଉରି ବର୍ଷେ । ଘରର ଲୋକେ ଦୁଃଖ କରିପାରନ୍ତି । ଅଉ ୨ ବର୍ଷେ—

( ଆଠ )

ଦୋଳପୂନେଇର ଦିନେ ଦୁଇଦିନ ପୂର୍ବର ସାଙ୍ଗ ସହଛାତ୍ରମ ହାର କାଟରେ ଲୁଚିଲା । ବହୁତ ଉତ୍ପାତ କଲା ମେନକ୍ । ସମସ୍ତଙ୍କ ମୁହଁରେ ମେନକ୍ କଥା । ବହୁତ ଫର୍ଦ୍ଦି କରୁଛି । ସମସ୍ତଙ୍କୁ ଧରିବାରଟି କରୁଛି । ସମସ୍ତଙ୍କୁ ଖୁଆଇ ସନ୍ତୋଷ କରୁଛି । ଛେଉଛି ଓ ଅଉଁଶିଛି । ପିଲ ପିଲ ଭିତରେ ଯେଉଁ ଝଗଡ଼ା ପାଟେରୁ ପର ଠିଆ ହୋଇଥାଏ ସେତକ ଭାଙ୍ଗିଛି ।

ଗୋଟିଏ ସାଙ୍ଗକୁ ଜର ହୋଇଥିଲା ମେନକ୍ ତାହାକୁ 'ହୋଉ' ଅଟେନ୍ସ ଭଲ କରଦେବା ପାଇଁ ବହୁତ ଚେଷ୍ଟା କରିଥିଲା । ଜର ତାହାର ଛାଡ଼ିଲା ନାହିଁ । ମେନକ୍ ଅସି ତାହାର ପାଖରେ ଟିକିଏ ବସିଲା । କହିଲା 'ହାଇ, ଏଥର ତମ ମୁହଁ ରଙ୍ଗ କରିପାରିଲି ନାହିଁ । ଆରବର୍ଷକୁ ଦେଖିବା……'

( ନଅ )

ହୋରଦନ ରଗୁଣ୍ଣପାଠ ପଇଁଛଟିମାର ମେନକ୍ ସେଦିନ ଗୋଟିଏ ନୂଆ ଜିନିଷ ପାଇଲା । ଗୋଟିଏ ଦୁଡ଼ପାଟଗ ଲାଙ୍ଗୁଡ଼ାଏ ଗୋଟିଏ ଠେକୁଅ ଛୁଆକୁ ଟୁଙ୍ଗୁଥିଲେ । ମେନକ୍ ସେଇଟିକୁ ଉଦ୍ଧାର କରି ଦୁ'ହାତରେ ଅସି ଦୋଡ଼ିଂରେ ପହଞ୍ଚିଥିଲା । ଲାଙ୍ଗୁଡ଼ାମାନେ ବଡ଼ରୀ ଛୁଆଟିକୁ ହରବଣ କରୁଥିଲେ । ମୁଣ୍ଡ ଓ ଅଖିର ଅଖପାଖ ଫାଣ୍ଡିଆ କରି ଦେଇଛନ୍ତି ।……ଛୁଅଟି ଏକୁଟିଆ ଡେଇଁଗଲା ଓ ସେମାନେ ପଲେ ହେଇଗଲେ ।…… ଛୁଅଟି ଦଉଡ଼ିପାରିଲା ନାହିଁ, ଲାଙ୍ଗୁଡ଼ାକ ଭୁଡ଼ ପାଇଲେ ।……

ବଡ଼ ଅଶ୍ଳେଷରେ ଛୁଅଟିକୁ ମେନକ୍ ଆଣି ମୁହଁପାଖରେ ଗେଲ୍‌କଲା । ତାହାକୁ କେତେ ଯତ୍ନରେ ଅଉଁଶିଲା । ଅସହାୟଟିକୁ ରକ୍ଷା କରିପାରନ୍ତୁ । ହୋରଦନ ନ ହେଇଥିଲେ ସେ କେବେ

ଯାଆନ୍ତା ନାହିଁ । ଛୁଆଟି ମରିଯାଇଥାନ୍ତା । ଭଗବାନ ତାହାକୁ ପଠେଇ ଦେଇଥିଲେ । କେଡେ ଲୀଳା ତାଙ୍କର !

ତତ୍ପର ହୋଇ ଛୁଆଟିକୁ ଦୁଧ ଖୁଆଇଲା । ନିଜେ ପଶୁଡାକ୍ତର-ଖାନାରୁ ଔଷଧ ଆଣି ଛୁଆଟିର ଶୁଶ୍ରୂଷା କଲା । ଟେକୁଆଛୁଆ ପାଇଁ କାଲିଦିଆ ବାକ୍ସ ତିଆରି କରିଲ ଆଣିଲା । ଟେକୁଆ କ'ଣ ଖାଏ ସେ ବିଷୟରେ ସେ ପଶୁଡାକ୍ତର, ପ୍ରାଣୀବିଜ୍ଞାନର ପ୍ରଫେସର, ପରିବା ବାଲା, ମେସ୍‌ର ଚାକର ଓ ସାଧାରଣ ଲୋକ ଙ୍କ ଠାରୁ ସମସ୍ତଙ୍କୁ ପଚାରି ବୁଝିବାରେ ଲାଗିଲେ ।

ସେ କେଇଦିନ ମେନନ୍‌ର ଗୋଟାଏ କଥା—ଭଗବାନଙ୍କର ଦୟା ଓ ଟେକୁଆର ଜୀବନ-କାହାଣୀ ।

( ଦଶ )

ଟେକୁଆ ଛୁଆଟି ମାଆକୁ ଭୁଲିଯାଇଥିଲା । ମେନନ୍ ଆଉ ତାହାକୁ ପାଖଛଡ଼ା କରେ ନାହିଁ । ସେ ମେନନ୍‌ର କୋଟ୍ ପକେଟରେ କଲେଜକୁ ଯାଏ । ମେନନ୍‌ର ମଶାରି ପାଖରେ ଶୁଏ । ମେନନ୍ ହାତରେ ଖାଏ । ଘରେ ନୂଆଲୋକ ଆସିଲେ ମେନନ୍ ତାହାକୁ ବାକ୍ସରେ ନେଇ ଗାଧୁଆଘରେ ରଖିଦିଏ । ସମସ୍ତେ ଛୁଆ କଥା ପଚାରନ୍ତି—ମେନନ୍ ଟେକୁଆ ଛୁଆର ମୋଟାମୋଟି ଇତିହାସ କହିଯାଏ । ଛୁଆକୁ ଦେଖାଏ—ମିଟିମିଟି ଆଖିରେ ଚାହୁଁଛି ।

ଏହି ଉତ୍ସୁକତା ଭିତରେ ପଣ୍ଡା କଥା ମନେ ପଡ଼ିଯାଏ । ମେନନ୍ ସ୍ଥିର କରେ ପଣ୍ଡାଙ୍କ ଘରେ ସେ ଥରେ ଦେଖା କରିଯିବ । ଭଲ କରି ପଢ଼ିବ । ଘରକୁ ଫେରିଗଲାବେଳେ ଟେକୁଆ ଛୁଆଟିକୁ ନେଇଯିବ ସାଙ୍ଗରେ । ତାହାର ବାପଘର ପଡ଼ିଆ ସେଇଟିକୁ ସ୍ତ୍ରୀକୁ ଉପହାର ଦେବ । ଛୁଆଟିର ମା' ତାହାକୁ ବଞ୍ଚାଇ ପାରିଲା ନାହିଁ, କି ଜଗାରଖା କରିପାରିଲା ନାହିଁ । ମେନନ୍ ପାଖରେ ସେ ଅଛି ।

ତିନିଦିନ ପରେ ଟେକୁଅର ଦେହ ଖରାପ ହେଲା । ଟେକୁଅ କିଛି ଖାଉଛି ନାହିଁ । ମେନନ୍ ପଶୁଡାକ୍ତରକୁ ଦେଖାଇ ଜାଣିଲା ଯେ ଟେକୁଅକୁ ଜର ହୋଇଛି । ତାହାର ଔଷଧ ଆସିଲା । ମେନନ୍ ଛୁଆଟିର ବହୁତ ସେବା ଶୁଶ୍ରୂଷା କଲା । ରାତିରେ ତାହାକୁ ନିଜର ପିନ୍ଧା ଗରମ ଗେଞ୍ଜି ନଇଲେ ବେକର ମଫଲରରେ ଢାଙ୍କିଦିଏ । ପାଖରେ ରଖେ । ଯତ୍ନ କରେ ।

ଚାରିଦିନ ପରେ ସେ ବି ଦଗାଦେଇ ଚାଲିଗଲା । ଯେଉଁଦିନ ଛୁଆଟି ମଲା, ମେନନ୍ ବହୁତ ବସି କାନ୍ଦିଲା । ଘରକୁ ନେବ, ସ୍ତ୍ରୀକୁ ଖୁସିହେଇ ପ୍ରଥମ ଭେଟି ଦବ, କେମିତି ଛୁଆଟିକୁ ପାଇଥିଲା ତାହାର ବିଶେଷ ବିବରଣୀ ଦେବ । କେତେ ପ୍ରକାରର ପାଞ୍ଚୁଥିଲା ।

ଟେକୁଅଛୁଆଟିକୁ ପୁଣି କାଉ ମୁହଁକୁ ଫିଙ୍ଗିଦେଲେ । ଜୀବି-ଥିଲାବେଳେ ସେ ଯେଉଁଠୁ ଉଦ୍ଧାର କରି ଆଣିଥିଲା ମଲାପରେ ସେଠିକି ଆଉଥରେ ଫୋପାଡ଼ି ଦେଲା । ତାହାର ଝରକା ପାଖରୁ ଚାହିଁଥାଏ । ଯାହିଁକରି କାଉଦଳ ଚୁଁଅଡ଼ ଝାମ୍ପି ପଡ଼ୁଥାନ୍ତି ସେହି ଛୁଆଟିର ମୃତଦେହ ଉପରେ, ଅଳ୍ପ ସମୟପରେ ତାହାର ଢଣ୍ଡା କେଉଁଖଣ୍ଡ ପଡ଼ିରହିଲା ।

ମେନନ୍ ବ୍ୟସ୍ତହୋଇ ବୁଲିଲା । ପରୀକ୍ଷା ମୁଣ୍ଡ ଉପରେ । ବାଦ କଲାପରି ଛୁଆଟା ଆସି ଅନେକ ସମୟ ନଷ୍ଟ କରେଇ ଦେଲା । ପଢି ହେଲାନାହିଁ । ପଢ଼ି ବସିଲେ ଛୁଆଟାର ଅନେକ ଛୋଟ ଛୋଟ କଥା ମନେ ପଡ଼ିଯାଉଛି । ତାହାର ଚଞ୍ଚଳ ଆଖି, ଛୋଟ ଛୋଟ ଆଖି ଦୁଇଟି ଯେମିତି ତାହାକୁ ପାଖକୁ ଡାକୁଛି । ଏ ପାଖେ ପରୀକ୍ଷା ଆଁ କରି ଧାଇଁ ଆସୁଛି ମେନନ୍ ଆଡ଼କୁ । ଆଉ ବାକି ଏକତିରିଶି ଦିନ । ସେଥି ଭିତରେ ସରିବ ଦୋଏ ବହି । କଣ ହେଉଛି କେଜାଣି ?

( ଏଗାର )

ଦୁଃଖ ଦୂର କରିବା ପାଇଁ ଦୁଇଜଣ ସାଥୀ ଅତି କଷ୍ଟରେ ଯୋଗାଡ଼ କରି ଦେଇ ସିନେମା ଦେଖିଗଲେ। ବାଟରେ ଏକ୍କା ଉପରେ ବଡ଼ ଅକ୍ଷରରେ ଲେଖାଥାଏ "ଭାଇ, ଅଳ୍ପ ମାସକରେ ପରୀକ୍ଷା। ପାସ୍ କଲେ ଏହି ସ୍କୁଲ ଜଞ୍ଜାଳରୁ ଚିରଦିନ ପାଇଁ ଛୁଟି ମିଳିବ। କିନ୍ତୁ ପଢ଼ିନାହିଁ। ସତେ କଣ ଏଥର ବି ଅଟକି ଯିବ?—ଏତିକି ସୌଭାଗ୍ୟ କଣ ମତେ ଦିଆ ହୋଇନାହିଁ?

ସତ୍ୟରେ କହିଲେ ସେଥର ମେନନ୍ ନିଶ୍ଚୟ ପାସ୍ କରିବ। ସେ ବୁଦ୍ଧିମାନ୍। ଆଜିଠୁ ସେହି ବହିସବୁ ଘୋଷା ଘୋଷି କରୁଛି। ଠିକିଏ ଏଣେ ସେଣେ ନହେଲେ ସେ ଥରରେ ଟପି ବାହାରିଯିବ। ସେ ତାହାର ଅନେକ ଚେଷ୍ଟା କରୁନାହିଁ। ପାସ୍ କରିଗଲେ ତାହାର କଣ ବା ଏତେ ହେବ ଯେ ଈଶ୍ୱର ତାହାକୁ ସେଥିରୁ ଅଟକାଇବେ?

ମେନନ୍ କହିଲା କେଜାଣି—ଏକୁଆ ଜୁଆ ଅଛି ମୋର ମନରେ ଲେଖିଲେ ଅନା ଜଟେଇ ଗଲିଲେ। ବୋଧହୁଏ ମତେ କହୁଯାଉଛନ୍ତି, ମୋର ଆଶା ବୃଥା। ମତେ ଲାଗୁଛି ଯେମିତି ମୁଁ ଖାଲି ଏହି ପରୀକ୍ଷା ପାଇଁ ବଞ୍ଚିରହିଛି।

( ବାର )

ତିନିଦିନ ପରେ ମେନନ୍‌କୁ ଜର ହେଲା। ଜର ଛାଡ଼ିଲା ନାହିଁ। ମେନନ୍ ଟ୍ରିପ୍ ହୋଇ ପଡ଼ିରହେ। ମୁଣ୍ଡ ଉପରେ କଣ ଯେମିତି ଗୋଟିଏ ଲଦା ହୋଇ ରହିଥାଏ। ମେନନ୍ ବହିତକ ତାହାର ମୁଣ୍ଡ ପାଖରେ ଜମେଇ ରଖିଥାଏ। ପଢ଼ିପାରେ ନାହିଁ—ଆଖି ଆପଣା ଛାଏଁ ମାଡ଼ିପଡ଼େ। ଆଖି ବୁଜି ହୋଇଗଲେ ତାହାର ମନେପଡ଼େ ପରୀକ୍ଷା କଥା—ଶେଷ ପରୀକ୍ଷା। ପରୀକ୍ଷାର ଫଳ ଉପରେ ତାହା ଜୀବନର

ଏତେଠି ଆଶା ଟିଏ ହୋଇ ରହିଛି । କେତେ ପ୍ରିୟଜନ, କେତେ ଆତ୍ମୀୟଲୋକ ଚାହିଁ ବସିଛନ୍ତି ମେନନ୍ ଅପେକ୍ଷା ।

'ଅଃ—ଜର ନାହିଁ ଛାଡ଼ୁନାହିଁ । ଦୁର୍ଯୋଗ ଗୋଟିଏ ପରେ ଗୋଟିଏ ଆସୁଛି । ଗୃହଦିନ ତଳେ ଠେକୁଆ ଛୁଆ ଦଉଡ଼ ଦିନ ଖେଳାଇ ନେଇ ପଳାଇଛି । ଦୁଇ ଦିନ ସ୍ନାନ ଜର ଥିଲା ଭାଲପାଇ ମାରୁ ଆସୁଛି, ଛାଡ଼ୁନାହିଁ, ଅଢ଼େଇ ଦିନ ହେଲାଣି । ଭାତ ଖାଉନାହିଁ । ଡାକ୍ତରର ଔଷଧ ଧରୁନାହିଁ । ଡାକ୍ତର କହୁଛି ଆଉ ଦି'ତିନି ଦିନରେ ସେ ଜର ଛାଡ଼ିବ । ତା'ପରେ ସେ ଜରକୁ ଭଲ କରିବ ।'

"ଯାହା ଟଙ୍କା ନେଲେ ନେଉ, ଦୁଇ ଦିନରେ ଯେ ଭଲ ହୋଇପାରନ୍ତା କି ?···ପରୀକ୍ଷା ଆଜି ଠେଲେଇ ଠେଲେଇ ଅଜାଡ଼ି ହେଇଯିବ ତାହାର ମୁଣ୍ଡ ଉପରେ । ଗଦାଏ ବହି···ଅଃ, ମରିଗଲେ ଛୁଟି । ଏଥର ପରୀକ୍ଷାଟା ତା'କୁ ଖାଇବ ।

ମନରେ ତାହାର ମନେ ପଡ଼େ ମା' ଖୁଡ଼ୀଙ୍କ କଥା । ବାପା ଦାଦାଙ୍କ କଥା । ତାହାର ଶ୍ୱଶୁର ଶାଶୁଙ୍କ କଥା । ସେମାନେ ତାହାର ଅପେକ୍ଷା ଚାହିଁ ବସିଛନ୍ତି । ସେମାନଙ୍କୁ ତାହାର ଜର ଖବର ସେ ଦେଇ-ନାହିଁ । ବୃଥାରେ ସେ ବ୍ୟସ୍ତ ହେବେ । ଦେଢ଼ ହଜାର ମାଇଲ ଦୂରରେ ରହି କ'ଣ ବା ସେମାନେ କରିପାରିବେ ?··· ଜର ଛାଡ଼ିଗଲେ ସେ ପଢ଼ିବ ପାସ୍ କରିବା ଭଗବାନଙ୍କ ହାତରେ ।

ବୋର୍ଡିଂଟା ପ୍ରାୟ ନିସ୍ତବ୍ଧ । ପରୀକ୍ଷାର ଆକ୍ରମଣରେ ସମସ୍ତଙ୍କର ପାଠପଢ଼ା ଲାଗିଛି । ମେନନ୍ ପାଖରେ ଆସି ଅଧଘଣ୍ଟାଏ ବସିବା ପାଇଁ କାହାରିକୁ ତର ନାହିଁ । କେହି କେହି ଆସନ୍ତି । ସେମାନଙ୍କ ମୁହଁରେ ବ୍ୟଗ୍ରତା ଦିଶେ—ଡେରି ହେଲେ କ'ଣ ଟିକିଏ ପଢ଼ିବେ । ମେନନ୍ ସେମାନଙ୍କୁ ବିଦାୟ କରିଦିଏ । ଶୁଖିଲା ଓଠରେ ହସ ଟୋଳାଇ କହେ 'ଯା, ଭାଇ, ଯା । ପଢ଼ାପଢ଼ିରେ ଲାଗିବେ । ମୋର ଜର ଏଥର

ଦିନେ ଦୁଇ ଦିନରେ ଭଲ ହୋଇଯିବ । ମୁଁ ପଢ଼ିବାକୁ ବହୁତ ଚେଷ୍ଟା କରୁଛି, ପାରୁନାହିଁ । ଯାହା ହେବ । ସମସ୍ତେ କାହିଁକି ଭୁଲିବା ।'

ଇଚ୍ଛା ନ ଥିଲେ ବି ବନ୍ଧୁମାନେ ଚାଲିଯାନ୍ତି । ସଂସାରର କର୍ତ୍ତବ୍ୟ ସମସ୍ତଙ୍କୁ ଡାକୁଛି । ଏହି ପୃଥିବୀରେ ଯେ ଯାହାର ଧନ୍ଦାରେ ପାଗଳ । ପର କଥାକୁ କିଏ କେତେ ବାଟ ଅନୋଉଛି ।

ମୋହନ୍‌ର କୋଠରୀ ନିର୍ଜନ୍ ହୋଇଯାଏ । ରୁମ୍ ଛାଡ଼ିବା ପାଇଁ ଷ୍ଟୋଭ୍ ଆଉ ଶବ୍ଦ କରେ ନାହିଁ । ମୋହନ୍‌ର ବିଛଣା ଉପରେ ଲେଣ୍ଡୁଟିଏ ଜଗିରେ ପଡ଼ିଥାଏ । ଆସିବା ଯିବା ଲୋକର ବୋଲହାକ କରେ । ଡାକ୍ତର ଆସିଲେ ଦଶ ପାଞ୍ଚଜଣ ବସନ୍ତି । ଖାଇବାକୁ ଗାଧୋଇବାକୁ ଚାଲି ଆଇଲାବେଳେ ଜଣେ ଅଧେ ବନ୍ଧୁ ଆସି ସଙ୍ଗରେ ଯାଆନ୍ତି ।

ମୋହନ୍ କେତେ ଭାବେ । କିଏ ଆସି ଯଦି ପଢ଼ି ଶୁଣାନ୍ତେ ତାହାହେଲେ ତାହାର ପରୀକ୍ଷା ପାଇଁ ଡର କମ୍ ହୋଇଯାଆନ୍ତା । ପାଠ ହେଲା ଇଞ୍ଜିନିୟରିଂ । ଅଙ୍କର ମାତ୍ରା ବେଶି । ଇତିହାସ ପରି ହେଲେ ହୋଇଥାନ୍ତା । କିଏ ଆସି ରୋଗୀକୁ ବସି ପାଠ ଶୁଣାଇବ କି ବୁଝାଇବ ? ମନ ଭିତରେ ଅଭିମାନ ଆସେ । ବିପଦରେ ଜଣେ ବି ଆସି ମୋହନ୍ ସାଙ୍ଗରେ ବିପଦରେ ଡେଇଁ ପଡ଼ିବାକୁ ଛାଡ଼ିବ ବୋଲି କହିଲା ନାହିଁ ।

( ତିନି )

ନିଜର କାମ ନିଜେ କରେ । ଜରରେ ବି ତାହାର ପେଟ ଗୋଳମାଳ ହେଲା । ମୁନିସିପାଲିଟିର ଟେମ୍ପରେଚର ପାଇଁ ପାଇଖାନା ସଫା ହେଉନାହିଁ । କୋଠରୀରେ ଝାଡ଼ା ଫେରିଲେ ସାଫ୍ କରିବାକୁ ମେହେନ୍ତର ମିଳିବେ ନାହିଁ । କେହି ସାଙ୍ଗ ଆସି ସେଥିରେ ସାହାଯ୍ୟ କରିବାକୁ ବାଧ୍ୟ ହେବ ।

ଏହା ସେବାଟିକ ପାଇଁ ମେନନ୍‌ଙ୍କୁ ବାଧା ହୁଏ । ସେ ଏକା ଏକା ଯାଏ ପଢ଼ିଅକୁ । କାହାରିକୁ ଡାକେ ନାହିଁ । ସାଙ୍ଗସାଥିମାନେ ଏଥିରେ ତାହାକୁ ଟାଳି ଦିଅନ୍ତି । ମେନନ୍ ଜଗରେ ହୃଦକୁ ଗୃଲ ଗୃଲ ଯାଉଛନ୍ତି । ରୁମ୍‌ରେ ସେ ବେଡ୍‌ପ୍ୟାନ୍ ବ୍ୟବହାର କରୁ ।

ମେନନ୍ ମେଡକ କରେ ନାହିଁ । ଯେଉଁ ହାଡ ପାଟରୁ ସେ ଠେଙ୍ଗୁଆ ଛୁଆଟିକୁ ପାଇଥିଲା ସେହି ହାଡ଼କୁ ପ୍ରତିଦିନ ଯାଏ । କାହାରିକୁ ସାଙ୍ଗରେ ଯିବାକୁ ଡାକେ ନାହିଁ । ତାହାର ଦେହ ଗୃଲିବାବେଳେ ଥରେ । ବେଳେ ବେଳେ ସେ ପଡ଼ିଲା ପରି ହୁଏ ।

ଡାକ୍ତର କହିଲେ 'ଟାଇଫଏଡ୍' । ପରୀକ୍ଷା ବହିଲା ଚବିଶିଦିନ । ଟାଇଫଏଡ୍ ଜର ଭଲ ହେବାକୁ କେତେଦିନ ଲାଗିବ କେଜାଣି । ସେତେବେଳକୁ ତାହାର ପରୀକ୍ଷା ଶେଷ ହୋଇଯାଇଥିବ । ଅଉ ଗୋଟିଏ ବର୍ଷ ତାହାକୁ ଲଦ ଦେଇ ଗୃଲଯିବ ।

ଯେତେବେଳେ ଡାକ୍ତରଙ୍କ ପରାମର୍ଶରେ ସୁପରିଣ୍ଟେଣ୍ଡେଣ୍ଟ ଅସି ତାହାକୁ ଡାକ୍ତରଖାନାକୁ ବିଶେଷ ଚିକିତ୍ସା ପାଇଁ ପଠାଇବାର ବନ୍ଦୋବସ୍ତ କଲେ, ମେନନ୍‌କୁ ଭାରି ବାଧା ଦେଲା । ପରୀକ୍ଷାଟା ଅଦିନ ଅସିଲା ପରି । ଛ' ବର୍ଷ ହେଲଣି ଯେଉଁ ପରୀକ୍ଷାକୁ ସେ ବୋର୍ଡ଼ିଂରେ ରହି ପଢୁଆ ପିଲାଙ୍କ ମେଳରେ ଥାଇ ପାଉଥିଲା, ସେଥରକ - ଦେଇଟା ତାହାକୁ ମିଳିବ ଗୋଟିଏ ଡାକ୍ତରଖାନାରେ ।

ଭଲ ଚିକିତ୍ସା ମିଳୁ ନ ମିଳୁ ତାହାକୁ ବୋର୍ଡ଼ିଂରେ ରହିବା ପାଇଁ ସେ ବହୁତ ଅନୁରୋଧ କରିଥିଲା । ଡାକ୍ତର ରାଜିହେଲେନାହିଁ । ସୁପରିଣ୍ଟେଣ୍ଡେଣ୍ଟ ରାଜି ହେଲେ ନାହିଁ । ପାଖ କୋଠରୀର ପିଲାଏ କୁଣ୍ଠିତ ହେଲେ ମୁହଁ ଖୋଲି ମନା କରିବାକୁ । ଟାଇଫଏଡ୍ ରୋଗୀ— ପୁଣି ଦୁଆର ସେ ପାଖେ । ରହିଲା ବାଉଣେଟା କେତେଦିନ । ସମସ୍ତେ ଜଣା ବହୁତେ ଭାବିଲେ ମେନନ୍ ଯାଆନ୍ତୁ ଡାକ୍ତରଖାନା ।

( ଚଉଦ )

ଗାଡ଼ିରେ ବସି ଚାଲିଲାବେଳେ ବେମନାନ୍ ଛଳ ଛଳ ଆଖି କଲା । ସେମାନଙ୍କୁ କହିଲା, 'ଭାଇ, ଏଥର ପରୀକ୍ଷା ବି ହେବ ନାହିଁ । ଛୁଟି ଦିଅ, ମାଁ ...... ଭଲକର ପଢ଼ ।' ତେବେ ଖଣ୍ଡେ ଦିଖଣ୍ଡେ ବହି ନହିଲେ ମହିଳେ ମୁଁ ମନେଇଲେ ମନେ ହେଉଥିବ । ମୁଖସ୍ତା ହେବନି ପଢ଼ିବି । ଡାକ୍ତରଖାନାରେ ବହି ପରୀକ୍ଷା ଦେବାର ବ୍ୟବସ୍ଥା ଅଛି ।

ବୋଡ଼ିଂରୁ ଚାଲିବେଳେ ମେନାନ୍ ଭାବିଥିଲା ତାହାର ଛ' ବର୍ଷର ବୋଡ଼ିଂରେ ରହିବା କଥା । ଯେଉଁମାନଙ୍କଠାରୁ ସେ କିଛି ପାଇବ ବୋଲି ଆଶା କରିଥିଲା, କିଛି ପାଇନାହିଁ । ପରୀକ୍ଷାବେଳେ ତାହାର ସେହି ଜବରେ ଯେଉଁ ତିନି ଚାରି ଜଣ ତାହାର ଚାକର ହେବାଯତ୍ନ କରିଥିଲେ, ସେମାନେ ସମସ୍ତେ ତାହାର ଚାରି ବର୍ଷ । ପାଖ ବନ୍ଧୁମାନେ ତାହାର ବହୁତ ସମୟ ଓ ଧନ ନେଇଥିଲେ । ସେମାନେ ହିଁ ବନ୍ଧୁଠାରୁ ଅଜବ ସ୍ଥାନ । ଯେଉଁ କେଇଟି ଦୂରେଇ ଦୂରେଇ ରହୁଥିଲେ, ବିପଦବେଳେ ଆସି ପାଖରେ ଠିଆହେଲେ ।

ସେମାନଙ୍କୁ ସେ ପାଖକୁ ଡାକି ନିଜର ହାତରେ ସେମାନଙ୍କ ହାତ ରଖି କହିଲା 'ଭାଇ, ଯଦି ଆରବର୍ଷକୁ ଏଇଠି ଦେଖାହୁଏ ତାହାହେଲେ— । ମଣିଷକୁ ଚିହ୍ନିବା ବଡ଼ କଷ୍ଟ । ବିପଦରେ ନ ପଡ଼ିଲେ ମଣିଷକୁ ଚିହ୍ନାଯାଏ ନାହିଁ ।'

( ପନର )

ବୋଡ଼ିଂରୁ ତିନି ମାଇଲ ଦୂରରେ ଡାକ୍ତରଖାନା । ଏତେ ଦୂରକୁ ଯାଇ ଘନ ଘନ ସଂଖୋଳିବା ବନ୍ଧୁମାନଙ୍କ ପକ୍ଷରେ ସମ୍ଭବ ହେଉନାହିଁ । ମନେଟା ଭାରି ଅଡୁଆ ହେଲେ ତାହାକୁ ଡକାଇ

ଟିକିଏ ପଢ଼ା କି ପରୀକ୍ଷା କଥା ପଚାରିବା ତ ମେନନ୍ ପକ୍ଷରେ ଆଜି ସମ୍ଭବ ହେବ ନାହିଁ । ବୋଧହୁଏ ସବୁ ଅଙ୍କ ଭୁଲିଛି ।

ଅସୀମ ଧୈର୍ଯ୍ୟ ନେଇ ମେନନ୍ ଡାକ୍ତରଖାନାରେ ସମସ୍ତଙ୍କୁ ଅଶ୍ଚର୍ଯ୍ୟ କରିଦେଲେ । ସାଂଘାତିକ ଟାଇଫଏଡ୍ ହୋଇଛି । ଏ ପ୍ରକାରର ଟାଇଫଏଡ୍ ସାଧାରଣ ମଣିଷଙ୍କୁ ହୁଏନାହିଁ । ଠେକୁଆଙ୍କୁ ହୁଏ ବୋଲି ବହିରେ ଲେଖାଅଛି । କେମିତି ବୋର୍ଡିଂ ପିଲାର ଏପ୍ରକାର ରୋଗ ହେଲା କେହି ଚିନ୍ତା କରି ପାରୁନଥିଲେ ।

ଶେଷରେ ଜଣାପଡ଼ିଲା ଯେ ମେନନ୍‌ବାବୁ ଠେକୁଆ ଛୁଆକୁ କୋଟ ପକେଟରେ ରଖୁଥିଲେ ଓ ମଶାରି ଭିତରେ ଧରି ଶୋଉଥିଲେ । ଠେକୁଆଟା ଜ୍ୱରରେ ମରିଥିଲା । ତାହାର ତିନି ଦିନ ପରେ ଜ୍ୱର ହୋଇଛି । ତାହାହେଲେ ମେନନ୍ ଆଜି ବୋଧହୁଏ ବଞ୍ଚିବେ ନାହିଁ ।

ସାଙ୍ଗମାନଙ୍କର ମୁହଁ ଶୁଖିଯାଏ । ମେନନ୍‌ର ବିଛଣା ପାଖରେ ଠିଆ ହୁଅନ୍ତି । ମେନନ୍‌ର ଦେହ ଶୁଖି ଯାଇଛି । କିନ୍ତୁ ଦେହରେ ଅସୀମ ଶକ୍ତି ଥିଲା । ମନରେ ବି ସେହିପ୍ରକାରର ବଳ ଥିଲା । ସେ ଅଚେତ ହେଉନାହିଁ । ସେଇଟା ବି ଡାକ୍ତରଙ୍କୁ ଅଶ୍ଚର୍ଯ୍ୟ ଲାଗେ । ସେତିକି ଆଶା ଥାଏ, କାଳେ ମେନନ୍ ଭଲ ହୋଇପାରେ । ତେବେ ଆଶା କମ୍ ।

ସାଙ୍ଗଙ୍କୁ ଦେଖିଲେ ସେହି ରୋଗରେ ବି ମେନନ୍‌ର ମୁହଁରେ ହସ ଖେଳିଯାଏ । 'ଅସିଲ ଭାଇ ! ଚଞ୍ଚଳ ଫେରିଯାଅ । ପଢ଼ିବ । ପରୀକ୍ଷା ଆଉ ପନ୍ଦର ଦିନ ରହିଲା । ମୁଁ ଭଲ ହେଇଗଲେ ବି ଏଥର ପରୀକ୍ଷା ଦେଇ ପାରିବି ନାହିଁ । ଦିନକୁ ଦିନ ବେଶୀ ଦୁର୍ବଳ ଲାଗୁଛି । ମନରେ ଅନେକ ପ୍ରକାରର ଦୁଶ୍ଚିନ୍ତା ଆସୁଛି ।' ... ... ଆଉ ପଢ଼ିବେ, କିଏ ସବୁ କେତେ ଘଣ୍ଟା କରି ପଢ଼ୁଛନ୍ତି । ସାଙ୍ଗମାନଙ୍କ ମନରେ ଆଶା ଆସେ ଯେ ବୋଧହୁଏ ମେନନ୍ ବଞ୍ଚିଯିବ ।

ତିନ ମାଇଲ ଦୂରରେ ବୋଡ଼ିଂ । ଅସିବାକୁ ଘଣ୍ଟାଏ ଲାଗିବ । ଫେରିବାକୁ ଘଣ୍ଟାଏ । ନ ଅସିଲେ ମେନନ୍ କ'ଣ ଭାବିବ ? ଅଛିଲେ ପରୀକ୍ଷା ଗଲା । ମେନନ୍ ସେସବୁ ବୁଝେ । ସେମାନଙ୍କୁ ବୁଝେଇ କହେ—'ମୋର ଦେହ ଭଲ୍ ହେବ ତାହାର ସମୟରେ । ସମସ୍ତେ ଅସିଲେ କିଛି ଲାଭ ହେବ ନାହିଁ । ତମେ ତମେ ପଢ଼ । ପାଞ୍ଚ ଛ' ଦିନରେ ଥରେ ଅସିବ ।······ଯାଅ······ନମସ୍କାର ।'

ଟିଏଦୋଇ ରହିଲେ କି ଅଟକି ରହିଲେ ସେ ବିରକ୍ତ ହୁଏ । 'ଯାଅ ଭାଇ, ଯାଅ । ତମେମାନେ ବେଶି ବେଳ ଅଟକି ଗଲେ ମତେ ଯନ୍ତ୍ରଣା ହେଉଛି ।'

ବନ୍ଧୁମାନେ ଫେରିଯାନ୍ତି । ଫେରିଗଲାବେଳେ ଅପଣା ଭିତରେ କଥା ହୁଅନ୍ତି । ମେନନ୍ ପରି ହୃଦୟ ଥିବା ଲୋକ ବଡ଼ ଦୁର୍ଲଭ ।

( ଷୋଳ )

ସାଂଘାତିକ ଟାଇଫଏଡ୍ ଜରରେ ଶୋଇ ମେନନ୍ ତାହାର ନିଜର ସମସ୍ତ କଥା ବୁଝୁଥିଲା । ଘରକୁ ଚିଠି ଲେଖିଦିଏ ପ୍ରାୟ ପ୍ରତିଦିନ ଯେ ସେ ଭଲ୍ ଅଛି ଓ ପରୀକ୍ଷା ପାଇଁ ପଢ଼ାପଢ଼ି କରୁଛି । ବାପା ମା କାହିଁ ବ୍ୟସ୍ତ ହେବେ ? ହେଲେ ବି କ'ଣ କରି-ପାରିବେ ?

· ମେନନ୍‌ର ଦରକାର ହେଲେ ଲେମ୍ବୁ କିଣାହୁଏ । ମେନନ୍ ନିଜର ମୁଣ୍ଡତଳୁ ପଇସା ଦିଏ । ସେମାନେ ଥରକେ ଧ' ଅ-ଢ଼ାଇ ଓଜନ୍ ଲେମ୍ବୁ ଅଣି ଦେଇ ଦିଅନ୍ତି । ଝିକିଏ ନରମ ହୋଇ ଅସିଲେ ମେନନ୍‌କୁ ଖାଇବାକୁ ମନା କରନ୍ତି । ନିଜେ ନେଇଯାନ୍ତି ଘରକୁ । ମେନନ୍ ହସି ନୂଆ ଲେମ୍ବୁ ପାଇଁ ପଇସା ଦିଏ । କିଛି କହେ ନାହିଁ ।

ବରଫ ଦରକାର ହେଲେ ବା କୌଣସି ପ୍ରକାରର ବିଶେଷ ଔଷଧ ଦରକାର ହେଲେ ନିଜର ଇଚ୍ଛା ଓ ରୁଚି ଅନୁସାରେ ସେମାନେ ଟଙ୍କା ନେଇ ଯାଆନ୍ତି । ମେନନ୍ ଧୀର ରହେ ।

ବନ୍ଧୁମାନେ ଚୋଙ୍ଗରେ କଥା ହୁଅନ୍ତି । ପରୀକ୍ଷା ଯାହା ହେଉ ନ ହେଉ, ନ ଗଲେ ଅନ୍ୟାୟ ହେବ । ମେନନ୍ କ'ଣ ଭାବିବ ମନରେ ? ଚାଲ୍ ଆସନ୍ତା ଡାକ୍ତରଖାନା ।

ମେନନ୍‌ର ସେହି ଗୋଟିଏ କଥା । ପରୀକ୍ଷା ଆଉ ରହିଲା ମାତ୍ର ଦିନ । ଅପ୍ରେଲ ତିରିଶିରେ ପରୀକ୍ଷା—ନା ? —ହୁଁ ।

ବହିଯାଇ କହିଲା 'ଅପ୍ରେଲ ତିରିଶିରେ ଏଥର ପରୀକ୍ଷା ପଡ଼ିବାରୁ ମନେ ଡର ହେଲା । ଅପ୍ରେଲ ତିରିଶିରେ ତାହାର ପାଆନ୍ତି ବାପାଙ୍କର ଶ୍ରାଦ୍ଧ ପଡ଼େ । ଗଲବର୍ଷ ସେହି ଅପ୍ରେଲ ତିରିଶିରେ ତାହାର ଜଣେ ଦାଦା ହଠାତ୍ ମରିଥିଲେ ଟାଇଫଏଡରେ । ଏ ବର୍ଷର ପରୀକ୍ଷାଟା ପଡ଼ିଲା ସେହି ଅପ୍ରେଲ ତିରିଶିରେ ।

ବନ୍ଧୁ ଜଣେ ତାହାକୁ ବୁଝାଇଲା, ସେଥିରୁ ବାହାନାଥା । ମେନନ୍ ପ୍ରତିବାଦ କଲା । 'ହଁ ପରୀକ୍ଷାଟା ଗଲା—ଯାଉ । ମଣିଷ ତ ଚାଲିଯାଉଛି । ନାହିଁ—ଖାଲି କହୁଥିଲି ଯେ ଅପ୍ରେଲ ତିରିଶିଟା ଆମ ଘରେ ମୋଟେ ଶୁଭ ଦିଏ ନାହିଁ ।'

ଫେରିଲାବେଳେ ସେ ବନ୍ଧୁମାନଙ୍କୁ ତାଗିଦ୍ କରିଦେଲା ଯେମିତି ଘରକୁ ସେମାନେ ମେନନ୍ ଡାକ୍ତରଖାନାରେ ଅଛି ବୋଲି ନ ଲେଖନ୍ତି । ସେହି ଖବର ପାଇଲେ ବାପା ମା ନିଶ୍ଚୟ ଆସିବେ । ତାହାର ଦାଦା ଓ୍ୱେଲିଅର୍ ମେଡିକାଲ୍ କଲେଜରେ ଅଛନ୍ତି । ସେ ବି ନିଶ୍ଚୟ ଆସିବେ । କିଛି ଲାଭ ହେବ ନାହିଁ । ସେମାନଙ୍କର ରହିବା ଚଳିବାରେ ବଡ଼ ଅସୁବିଧା ହେବ । ମୁଁ ଭଲ ହୋଇଯିବି ସେ—

( ସତର )

ସେହିଦିନ ଠାରୁ ମେନନ୍‌ର ଜେଉ ବୃଦ୍ଧି । ଦୁଇ ଦିନ ତାହାର ଅବସ୍ଥା ଅଧିକରୁ ଅଧିକ ଅଶଙ୍କାର କାରଣ ହେଲା । ଡାକ୍ତର ମେନନ୍ ଘରକୁ ଟେଲିଗ୍ରାମ୍ ପଠାଇଲେ କେହି ନିକଟର ଲୋକଙ୍କୁ ଆସିବା ପାଇଁ ।

ବୋର୍ଡିଂରେ ଖବର ପହଞ୍ଚିଲା । ଦଳ ଦଳ ହୋଇ ପିଲା ଗଲେ । ଦେହରେ ମେନନ୍ ବାବୁଙ୍କର ତେଲ ଓ ସାବୁନ କମ୍ପାନି ରହିଛି । କେତେ କେତେ ପ୍ରକାରର ଆମୋଦ, ଆନନ୍ଦ ପାଉଛନ୍ତି । ମେନନ୍ ବାବୁ ଦେହ ଏତେ ଖରାପ ହୋଇଛି । ଡାକ୍ତରଙ୍କ ମତ ଯେ ଭାଗ୍ୟ ଭଲ ଥିଲେ ସେ ବଞ୍ଚିବ ।······ଜେଉ ବୃଦ୍ଧିଗଲାଣି ।

ତାହାର ଅଚେତ ଦେହକୁ ପିଲାମାନେ, ସାଙ୍ଗ-ସାଥିମାନେ ଦେଖି ଠିଆହୋଇ ରହନ୍ତି । ଶ୍ୱାସନଳୀରେ କ'ଣ ଗୋଳମାଳ ହୋଇଛି । ନିଶ୍ୱାସ ପ୍ରଶ୍ୱାସ ନେଲେ ମେନନ୍‌ର ଦେହ ଗୋଟାଏ ବିକଟ ପ୍ରକାରରେ ଥର ହଉଛି । ଦେଖିଲେ ଜଣାଯାଉଛି ଯେମିତି ସେ ଭାରି କଷ୍ଟ ପାଉଛି ।

ବନ୍ଧୁମାନେ ଦୁଃଖିତ ହୋଇ ଭାବନ୍ତି ଆସିଥିଲେ ଯେ ମେନନ୍ ଜାଣିଲା ନାହିଁ । ଯଦି ଆଉ ଚେତା ନ ଫେରେ ତାହାହେଲେ ହୁଏତ ତାହାର ମନରେ କିଛିଏ ଅଭିମାନ ରହିଗଲା । ଆଗରୁ ଆସିଥିଲେ ରୋଗୀକୁ ତାହାର ଶେଷ ବେଳରେ କିଛିଏ ହେଲେ ଆଶ୍ୱାସନା ମିଳି-ଥାନ୍ତା—

( ଅଠର )

ଟେଲିଗ୍ରାମ୍ ପାଇ ତାହାର ବାପା ମା ଆସି ପହଞ୍ଚିଲେ । ମେନନ୍‌ର ପରିବାର ଦୁଇଦିନ ଆଗରୁ ମେନନ୍‌କୁ ଦେଖିବେ ବୋ

ନାହିଁ ଜାଣନ୍ତି ନାହିଁ । ଦୁଃସହ ଯନ୍ତ୍ରଣା ଭିତରେ ଅସି ପହଞ୍ଚିଲେ । ମା'ଟି ପାଖଛଡ଼ା ହେଉ ନଥିଲେ । ତାଙ୍କର ମାଇ ଅସିଛନ୍ତି ଦୂରରୁ ଡାକ୍ତର-ଖାନାରେ ପୁଅକୁ ଦେଖିବା ପାଇଁ । ତାଙ୍କର ବାହଯାଚ ବସ ଈଶ୍ୱରଙ୍କୁ ଡାକୁଛନ୍ତି ନିଜର ଅଲେଡ଼ା ଜୀବନକୁ ବଦଳରେ ଦେଇ ପୁଅକୁ ଭଲକରି ଘରକୁ ଫେରାଇ ଦେବାକୁ । ନିଜର ଘର ଦରବାର ଯାହା ଥିଲା ଶେଷ ହୋଇଯାଉଛି । ପୁଅଟି ଏକା ବାକି ରହୁଛି । ସେଇଟି ରହିଥାଉ—ମା' ବୋଲି ଜଣେ ଥିଲା ବୋଲି କାହାକୁ ପଚାରିଲେ କହିବ ।

ନଟରାଜଙ୍କର ସୃଷ୍ଟି ବଡ଼ ବିଚିତ୍ର । ମଣିଷ ଯେଉଁମାନଙ୍କ କଥା ଅତି ଅଳ୍ପ ହୋଇ ଭାବୁଥାଏ, ମରିବା ଆଗରୁ ସ୍ୱପ୍ନରେ କଳ୍ପନାରେ ଯାହା ଦେଖିବାର ଦେଖେନା କାହିଁକି ରକ୍ତମାଂସରେ ବି ଥରକ ପାଇଁ ଦେଖିବା ସୁବିଧା ପାଏ ।

ବାପ ମା ପହଞ୍ଚିବାର ଅଳ୍ପସମୟ ପରେ ମେନନ୍‌ର ପ୍ରଥମ ଚେତା ଅସିଲା ଚନ୍ଦନର ଅଚେତ ଅବସ୍ଥା ପରେ । ପାଖରେ ମା' ଠିଆ ହୋଇଛନ୍ତି । ଆଖିରୁ ଦୁଇଧାର ପାଣି ଗଡ଼ି ପଡ଼ୁଛି । ସେହି ହେତକ ଲଦରେ ଈଶ୍ୱରଙ୍କ ପାଖରେ ତାହାର ନିଷ୍ଫଳ ନିବେଦନ ଜଣାଇ ଯାଉଛି । ପୁଅ ବଞ୍ଚିଛି । ଦୟାମୟ ତାହାର ପ୍ରଥମ କାମନା ପୂରଣ କଲେ । ପୁଅକୁ ବଞ୍ଚାଇ ରଖିପାରିଲେ ଶେଷ ଜଣାଣ ଶୁଣାହେଲା ବୋଲି ଜାଣିବ ।

ମେନନ୍ ଆଖି ଆଗରେ ମା'କୁ ଠିଆ ହେବାର ଦେଖି ଖୁସି ହେଲା । ପରେ ବିରକ୍ତି ମିଶା ଦୃଷ୍ଟିରେ ପାଖରେ ଠିଆ ହୋଇଥିବା ବନ୍ଧୁମାନଙ୍କ ଅଡ଼କୁ ଚାହିଁଲା । ବୋଧହୁଏ କହିବାକୁ ଚେଷ୍ଟାକଲା ଯେ ତାହାର ଇଚ୍ଛା ବିରୁଦ୍ଧରେ ବାପାମାଆଙ୍କୁ ଡକେଇ ଅଣିବା ଭୁଲ ହୋଇଛି ।

କଥା କହିପାରୁ ନାହିଁ । ସଂସାରକୁ ଆସିଲାବେଳେ କୁଆଁ କୁଆଁ କରି ଯା'କୁ ଜଣେଇ ଦେଇଥିଲା ସେ ଜାଣିଛି । ସେହି ଜୀଅନ୍ତା ଅବସ୍ଥାରେ ବି ସେ ଦିନ ସେ ପଦେ କଥା କହିପାରିଲା ନାହିଁ । ସୁନ୍ଦର ଅକ୍ଷି ଯୋଡ଼ିକ ନିଷ୍ପ୍ରଭ ହୋଇ ଆସୁଥିଲା । ସେଇଥିରେ ମା'କୁ ଚାହିଁ ରହିଲା । ମା' ଘୁଞ୍ଚିଲେ ମୁହଁ ପାଖରୁ ।

ପୁଣି ଅଚେତ ହୋଇଗଲା ।

( ଉଣେଇଶ )

ସେଥି ଭିତରେ ତାହାର ବାପା ଆସି ପହଞ୍ଚି ଥିଲେ । ସେ ଜଣେ ନାମଜାଦା ଡାକ୍ତର । କେତେ ରୋଗୀଙ୍କୁ ସେ ମରଣ ମୁହଁରୁ ସଂସାରର ଆଲୁଅ ପବନକୁ ଟାଣି ଆଣିଛନ୍ତି । ସେ ଆସିଥିଲେ ତାଙ୍କର ପିଲା ମେନକାକୁ ଫେରାଇ ଆଣିବେ । ଦେଖି ଜାଣିଲେ ଯେ ମେନକା ଶେଷ ଦେଖାପାଇଁ ଆସିଛନ୍ତି । ତାହାକୁ ମଣିଷ ଆଉ ଫେରାଇ ପାରିବ ନାହିଁ ।

ତହିଁଆର ଦିନ ସକାଳ । ମେନକା ଜୀବନର ଶେଷ ସକାଳ । ତାହାର ଯୌବନଭରା ଶରୀରଟି ନଇଁ ଯାଉଥିଲା । ଭାଙ୍ଗିଯିବା ସେହି-ଦିନ । ସେଦିନ ଅପ୍ରେଲ ୩୦ । ସେଦିନ ତାହାର ଶେଷ ପରୀକ୍ଷା ୟୁନିଭର୍ସିଟି କଲେଜରେ ଆରମ୍ଭ ହେବ ।

ମେନକାର ଚେତା ଫେରିଲା । ହାତ ଗୋଡ଼ ହଲାଇଲା, ଠାରରେ କହିଲା ଖଣ୍ଡେ କାଗଜପାଇଁ । ଖାତା ଉପରେ ବଡ଼ କଷ୍ଟରେ ବଙ୍କା-ଟେଢ଼ା କରି ଲେଖିଲା 'ସମସ୍ତଙ୍କୁ ବିଦାୟ—ବିଦାୟ ।' ଖାତାଖଣ୍ଡ ହାତରୁ ଖସିପଡ଼ିଲା । ପୁଣି ଅଚେତ ହୋଇଗଲା ।

ମା'ର ଧୈର୍ଯ୍ୟ ଭାଙ୍ଗିଆସିଲା । କାଲି ରୋଗୀ ଅଘାତ ପାଇବା ପରେ ସେହି ଅଘାତରେ ଅଠଘଣ୍ଟାଏ ଘଣ୍ଟାଏ ଅଟେରୁ ତାହାର ଜୀବନ ଦୀପ ଲିଭିଯିବ ବୋଲି ଆଶଙ୍କା କରି ତାହାର ମା'କୁ ବସାରୁ

ପଠାଇଦେଲେ । ଭଗବାନଙ୍କର ନିର୍ଦ୍ଦେଶରେ ଯାହା କିଛି ହେବାକୁ ଥିବ ହେବ ।

କିଛି ସମୟପରେ ପୁଣି ସମସ୍ତେ ବାହାରିଗଲେ ମା'ଙ୍କୁ ଡକେଇ ଆଣିବା ପାଇଁ । କାଳେ ରୋଗୀ ତାହାର ଶେଷ ମୁହୂର୍ତ୍ତରେ ମା'ଙ୍କୁ ଖୋଜିବ । ସେତେବେଳେ ଦେଖା ନ ପାଇଲେ ସେ ମରିବା ଆଗରୁ ଅତି ଅସମ୍ଭବ ଯନ୍ତ୍ରଣା ପାଇବ । ଖବର ହେଉ ନ ହେଉ ମା' ଫେରିଆସୁ ।

ମା' ପୁଣି ଆସିଲେ । ପ୍ରାୟ ସାଢ଼େଦଶଟାରେ ମେନନ୍ ଆଖି ଖୋଲିଲେ । ଘଣ୍ଟାଏ କେତେ ବାଜିଛି ଜାଣିବାକୁ ଚାହିଁଲେ । ଆଖିରେ ଉଦାସ ଭାବ । ଆଉ କାହାରିକୁ ଯେମିତି ଖୋଜୁନାହିଁ । ମା, ବାପା, ଭାଇ, ଡାକ୍ତର, ନର୍ସ ଆଦି ସମସ୍ତେ ଠିଆ ହୋଇଛନ୍ତି । ତାହାର ଦୃଷ୍ଟି ବାପାଙ୍କର ହାତଘଣ୍ଟାଆଡେ଼ ।

ଘଡ଼ିଘଣ୍ଟା ସାଢ଼େଦଶଟାକୁ ଠିକଏ ଟପିଗଲା । ପାଞ୍ଚମିନିଟ୍ ଅଧିକ ହୋଇଛି ମେନନ୍‌ର ପ୍ରାଣବାୟୁ ଚାଲିଗଲା ।

ଶେଷ ମୁହୂର୍ତ୍ତରେ ସେହି ପରୀକ୍ଷା କଥା ଭାବୁଥିଲା । ସାଢ଼େ-ଦଶଟା ବାଜିଲାଣି—ପରୀକ୍ଷା ଆରମ୍ଭ ହୋଇଥିବ । ମେନନ୍ ପରୀକ୍ଷା ଦେଇପାରିଲା ନାହିଁ ।

( କୋରସ )

ପରୀକ୍ଷା ସାରି ସନ୍ଧ୍ୟା ପାଞ୍ଚଟାବେଳେ ବନ୍ଧୁମାନେ ଶୁଣିଲେ ।
ସେତେବେଳକୁ ମେନନ୍ ତଥା ମନେପକାଇ
ବେଳ ନାହିଁ । ତାହାଁ ଆଉଧାନ ପୁଣି ପରୀକ୍ଷା ଦେଉଛି
ନାହିଁ ।

ପରୀକ୍ଷାର ପଠ୍ୟଅର ଗଣ୍ଡଗୋଲ୍ଲ । ମେନନ୍ ସେଥିରୁ ଭଟ୍ଟି-ଯାଉଛି । ପିଲ୍ଲମାନେ ଯେ ଯାଦୁର ବିମାନ ନେଇ ଚାଲିଗଲେ ବାପା ମା ତାଙ୍କ ଦେଶ ଫୋଟନକୁ ଫେରିଗଲେ ପୃଥିବୀକୁ ବଦଳେ ନର୍ମେର ମାଟିକୁ ଫେରିଲ ଦେଇ ।

---

ଛାପିଥିଲା
[illegible]